# ଗୌତମ ବୁଦ୍ଧ



ଜାନକୀବଲ୍ଲଭ ପଟ୍ଟନାୟକ

ଚିତ୍ରାଙ୍କନ - ଶ୍ରୀନିତ୍ୟାନନ୍ଦ ମହାପାତ୍ର

# ଗୌତମ ବୁଦ୍ଧ



ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ

ପ୍ରକାଶକ :

ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର

କଟକ-୨ : ବଦ୍ଧପୁର

ମୁଦ୍ରକ :

ପୌରୁଷ ପ୍ରେସ

କଟକ-୮

ଚିତ୍ରାଙ୍କନ :

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

ପ୍ରଥମ ମୁଦ୍ରଣ :

୨୫୦୦ତମ ବୁଦ୍ଧ ପରିନିର୍ବାଣ ବର୍ଷ, ୧୯୬୫

ଦ୍ୱିତୀୟ ସଂସ୍କରଣ : ୧୯୬୨

ତୃତୀୟ ସଂସ୍କରଣ : ୧୯୬୮

ଚତୁର୍ଥ ସଂସ୍କରଣ : ନଭେମ୍ବର, ୧୯୮୧

ମୂଲ୍ୟ : ଆଠଟଙ୍କା ମାତ୍ର

ସାଦା ବାଇଣ୍ଡିଂ ଟ ୫.୫୦



[ This book has been printed in paper made available by Govt. of India at Concessional rate. ]

# ସୂଚୀପତ୍ର

---

# ହେ ବୁଦ୍ଧ, ଶରଣ

ବୁଦ୍ଧ କୌଣସି ଦେବତା ନୁହେଁ । ଯେ ନିଜେ ମୁକ୍ତିର ଜ୍ଞାନ ଲାଭ କରି ଅନ୍ୟମାନଙ୍କୁ ମୁକ୍ତିର ବାଟ ଦେଖାଇ ପାରେ, ସେହି କେବଳ ବୁଦ୍ଧ ।

୨୫୦୦ ବର୍ଷ ତଳେ ଏ ଦେଶରେ ଏହିପରି ଜଣେ ଲୋକ ବୁଦ୍ଧ ହୋଇଥିଲେ; କିନ୍ତୁ ତାଙ୍କର ପ୍ରକୃତ ନାମ ଥିଲା ସିଦ୍ଧାର୍ଥ ଗୌତମ ।

ସେତେବେଳେ ଉତ୍ତର ଭାରତର ନାମ ଥିଲା ମଧ୍ୟଦେଶ । ଏହି ମଧ୍ୟ-ଦେଶରେ ହିମାଳୟର ପାଦଭୂମିରେ ଥିବା କପିଳବାସ୍ତୁ ନାମକ ରାଜ୍ୟରେ ଶାକ୍ୟମାନେ ରାଜପଣ କରୁଥିଲେ । କପିଳବାସ୍ତୁର ରାଜା ଶୁଦ୍ଧୋଦନ ଓ ରାଣୀ ମାୟାଙ୍କ ଔରସରେ ଗୌତମ ବୁଦ୍ଧଙ୍କର ଜନ୍ମ ।

ସେ ପିଲାଦିନୁ ଖୁବ ବିଳାସରେ ବଢ଼ିଥିଲେ । ଧନ, ଦୌଲତ, ଘୋଡାବାଡ଼ିର କୌଣସି ଅଭାବ ନ ଥିଲା । ଶାକ୍ୟ ରାଜ୍ୟର ସବୁଠାରୁ ସୁନ୍ଦରୀ କନ୍ୟାଙ୍କୁ ସେ ବିବାହ କରିଥିଲେ । ମାତ୍ର ଏସବୁ ତାଙ୍କୁ ସୁଖ ଲାଗିଲା ନାହିଁ । ୨୯ ବର୍ଷ ବୟସରେ ସେ ଗୃହତ୍ୟାଗ କଲେ । ୬ ବର୍ଷ କାଳ କଠୋର ତପସ୍ୟା କରି ଧ୍ୟାନ ଓ ସାଧନାର ବଳରେ ବୁଦ୍ଧତ୍ୱ ଲାଭ କଲେ ଏବଂ ୩୫ ବର୍ଷଠାରୁ ୮୦ ବର୍ଷ ପର୍ଯ୍ୟନ୍ତ ୪୫ ବର୍ଷ କାଳ କୁରୁଠାରୁ କଳିଙ୍ଗ ଯାଏଁ ସମସ୍ତ ଉତ୍ତର ଭାରତ ଭ୍ରମଣ କରି ସେ ଯେଉଁ ଧର୍ମ ପ୍ରଚାର କଲେ, ତା'ର ନାମ ବୌଦ୍ଧଧର୍ମ ।

ଗୌତମ ପ୍ରଥମେ ପ୍ରଚାର କଲାବେଳେ ତାଙ୍କର ପ୍ରକୃତ ମତରେ ମୋଟେ ୫ ଜଣ ଲୋକ ବିଶ୍ୱାସ କରିଥିଲେ, ମାତ୍ର ତାଙ୍କର ଜୀବିତାବସ୍ଥାରେ ତାଙ୍କର ଧର୍ମ ସମଗ୍ର ଭାରତବର୍ଷକୁ ପ୍ରଭାବିତ କରି ପାରିଥିଲା । ହଜାର ହଜାର ଲୋକ ତାଙ୍କ ପରି ଘର ଛାଡ଼ି ଦେଇ ସନ୍ନ୍ୟାସୀର ଗୈରିକ ବସ୍ତ୍ର ପିନ୍ଧିଥିଲେ ଏବଂ ଏହାଠାରୁ ବହୁତ ବେଶୀ ଲୋକ ସନ୍ନ୍ୟାସୀ ନ ହୋଇଥିଲେ ମଧ୍ୟ ତାଙ୍କ ମତର ଶ୍ରେଷ୍ଠତ୍ୱ ସ୍ୱୀକାର କରି ତାକୁ ସମର୍ଥନ କରୁଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଜାତି ଏବଂ ବର୍ଣର ବିଚାର ନ ଥିଲା । ଧନୀ ଦରିଦ୍ରର ଭେଦ ନଥିଲା । ରାଜା, ପ୍ରଜା, ବ୍ରାହ୍ମଣ, ଶୂଦ୍ର, ଅଛୁତଜାତି, ଅସ୍ପୃଶ୍ୟ ସବୁ ଶ୍ରେଣୀର ଲୋକ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରୁଥିଲେ ।

ତାଙ୍କର ମୃତ୍ୟୁର ଏହି ଅଢ଼େଇ ହଜାର ବର୍ଷ ମଧ୍ୟରେ ବୌଦ୍ଧ ଧର୍ମ ଆଉ ଭାରତବର୍ଷରେ ସୀମାବଦ୍ଧ ହୋଇ ନାହିଁ । ଏହା ପୃଥିବୀର ପ୍ରଧାନ ପ୍ରଧାନ ଧର୍ମମାନଙ୍କ ମଧ୍ୟରେ ଅନ୍ୟତମ । ସିଂହଳଠାରୁ ଜାପାନ ପର୍ଯ୍ୟନ୍ତ ସମଗ୍ର ଏସିଆ ମହାଦେଶର ପଚିଶ କୋଟି ଲୋକ ଏହି ଧର୍ମରେ ବିଶ୍ୱାସ କରନ୍ତି । ପ୍ରତିଦିନ ସହସ୍ର କଣ୍ଠରୁ ଶୁଣାଯାଏ—'ବୁଦ୍ଧଂ ଶରଣଂ ଗଚ୍ଛାମି'—ହେ ବୁଦ୍ଧ, ତମେ ମୋର ଶରଣ ।

ବୁଦ୍ଧଙ୍କର ନାମ ଓ ବାଣୀ କେବଳ ସନ୍ନ୍ୟାସୀର ଦୀକ୍ଷାପାଇଁ ନୁହେଁ; ଉତ୍କୃଷ୍ଟ କଳା, ଚିତ୍ର, ସ୍ଥାପତ୍ୟ, ସଙ୍ଗୀତ, କାବ୍ୟ ଓ ସାହିତ୍ୟର ସୃଷ୍ଟିପାଇଁ ପୃଥିବୀର ହଜାର ହଜାର ଲୋକଙ୍କୁ ଅନୁପ୍ରାଣିତ କରିଛି । ତାଙ୍କର ଉପଦେଶକୁ ସ୍ମରଣ କରିବା ପାଇଁ ଭାରତବର୍ଷର ଧଉଳି, ସାରନାଥ, ସାଞ୍ଚି ଓ ବୁଦ୍ଧଗୟା; ଅଜନ୍ତା ଓ ଏଲୋରା, ସିଂହଳର କାଣ୍ଡି ଓ ଅନୁରାଧାପୁର, ବ୍ରହ୍ମଦେଶର ସ୍ୱେଡ଼ାଗନ ସ୍ୱର୍ଣ୍ଣମନ୍ଦିର, ଇଣ୍ଡୋନେସିଆର ବରବଦୁର ସ୍ତୂପ, କାମ୍ବୋଡିଆର ଆଙ୍କୋର ମନ୍ଦିର, ଚୀନର ଟୁନ-ହୁଆଙ୍ଗ, ଜାପାନର ନାରା ଓ ହୋରିଓଜି ପ୍ରଭୃତି ଏସିଆର ଚୈତ୍ୟ, ସ୍ତୂପ, ମନ୍ଦିର ଓ ପର୍ବତର ଗୁହାରେ ପୃଥିବୀର ବେଳେବେଳେ ଶ୍ରେଷ୍ଠ କଳା, ସ୍ଥାପତ୍ୟ ଓ ଅଙ୍କନ ସୃଷ୍ଟି ହୋଇଛି । ସାହିତ୍ୟ, ଦର୍ଶନ ଓ ସଙ୍ଗୀତର ବିକାଶ ହୋଇଛି ।

ବୁଦ୍ଧଙ୍କର ନାମ ଓ କାର୍ଯ୍ୟ ଏକ ନୂତନ ସମ୍ପ୍ରଦାୟର ପ୍ରବାହ ସୃଷ୍ଟି କରିଛି । ଏ ସମ୍ପ୍ରଦାୟ ଜାତିଭେଦ ସ୍ୱୀକାର କରେ ନାହିଁ । ସ୍ତ୍ରୀ ଓ ପୁରୁଷଙ୍କୁ ସମାଜରେ ସମାନ ଆସନ ଦିଏ । ପ୍ରତି ଜୀବରେ ଦୟା ଓ ମନୁଷ୍ୟ ଚରିତ୍ର ପ୍ରତି ସହାନୁଭୂତି ଓ ସହିଷ୍ଣୁତା ପ୍ରକାଶ କରେ ।

ବୌଦ୍ଧଧର୍ମ ବୁଦ୍ଧଙ୍କୁ ରାମ, କୃଷ୍ଣଙ୍କ ପରି ଈଶ୍ୱରଙ୍କ ଅବତାର, ମହମ୍ମଦଙ୍କ ପରି ଈଶ୍ୱରଙ୍କ ପ୍ରେରିତ ଦୂତ ବା ଯୀଶୁଖ୍ରୀଷ୍ଟଙ୍କ ପରି ଈଶ୍ୱରଙ୍କ ପୁତ୍ର ବୋଲି କହେ ନାହିଁ । କୌଣସି ଲୋକ ଚାହିଁଲେ ଅବତାର ହୋଇ ପାରିବ ନାହିଁ; ଈଶ୍ୱରଙ୍କ ଦୂତ ବା ପୁତ୍ର ହୋଇ ପାରିବ ନାହିଁ; ମାତ୍ର ନିଜର ସାଧନା ବଳରେ ଯେ କେହି ଲୋକ ବୁଦ୍ଧ ହୋଇପାରେ । ତେଣୁ ପ୍ରତ୍ୟେକ ବୌଦ୍ଧ ଏହି ପ୍ରାର୍ଥନା କରେ ଯେ, ''ଅତୀତ କାଳରେ ଯେଉଁମାନେ ବୁଦ୍ଧ ହୋଇଥିଲେ, ବର୍ତ୍ତମାନ କାଳରେ ହେଉଛନ୍ତି ବା ଭବିଷ୍ୟତ୍‌ରେ ବୁଦ୍ଧ ହେବେ, ମୁଁ ସେମାନଙ୍କୁ ବନ୍ଦନା କରୁଛି ।'' ଅର୍ଥାତ୍ ବୁଦ୍ଧ ହେବାର ଶକ୍ତି ସମସ୍ତଙ୍କର ଅଛି ।

ଏହି ହେଉଛି ଗୌତମ ବୁଦ୍ଧଙ୍କର ଜୀବନର କାହାଣୀ ।



# ସୁମେଧ ବ୍ରାହ୍ମଣ

ଗୌତମଙ୍କ ଜନ୍ମର ହଜାର ହଜାର ବର୍ଷ ତଳର କଥା । ସେତେବେଳେ ଏହି ଭାରତବର୍ଷ ବା ଜମ୍ବୁଦ୍ୱୀପରେ ଦୀପଙ୍କର ନାମରେ ଅନ୍ତର ଜଣେ ବୁଦ୍ଧ ଜନ୍ମଲାଭ କରିଥିଲେ । ହଜାର ହଜାର ଶିଷ୍ୟଙ୍କ ଗହଣରେ ସେ ବିଚରଣ କରୁଥିଲେ । ତାଙ୍କର ଖ୍ୟାତି ସମସ୍ତ ଜମ୍ବୁଦ୍ୱୀପରେ ପ୍ରସାର ଲାଭ କରିଥିଲା ।

ଏହି ସମୟରେ ସୁମେଧ ନାମରେ ଜଣେ ବ୍ରାହ୍ମଣ ଯୁବକ ଥିଲେ । ସେ ସମସ୍ତ ଶାସ୍ତ୍ର ଅଧ୍ୟୟନ କରି ଯଜ୍ଞକର୍ମରେ ପାରଙ୍ଗମ ହୋଇଥିଲେ । ସୁନ୍ଦର ରୂପ ଓ ପାଣ୍ଡିତ୍ୟରେ ସେ ସମସ୍ତଙ୍କୁ ମୁଗ୍ଧ କରି ପାରୁଥିଲେ । ଅଳ୍ପ ବୟସରେ ମଧ୍ୟ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ପ୍ରସାର ଲାଭ କରିଥିଲା ।

ଦୀପଙ୍କର ବୁଦ୍ଧ ଯେଉଁଆଡ଼େ ଯାଉଥିଲେ, ତାଙ୍କ ଆସିବା ଖବର ପାଇ ଲକ୍ଷ ଲକ୍ଷ ଲୋକ ଦର୍ଶନ ଆଶାରେ ଜମା ହେଉଥିଲେ । ସୁମେଧ ଦୀପଙ୍କର ବୁଦ୍ଧଙ୍କ ନାମ ଶୁଣିଥିଲେ । ସେ କିପରି କାମନାକୁ ଜୟ କରି ଜରା ଏବଂ ସଂସାରର ମୁକ୍ତିର ବାଟ ବାହାର କରି ପାରିଛନ୍ତି, ତାହା ସେ ଶୁଣିଥିଲେ । ତାଙ୍କର ପ୍ରଶାନ୍ତ ମୁଖମଣ୍ଡଳ ଓ ବିମଳ ଯଶର ଗାଥା ମଧ୍ୟ ସେ ଶ୍ରବଣ କରିଥିଲେ, ମାତ୍ର ତାଙ୍କୁ ଦେଖିବାର ସୁଯୋଗ ତାଙ୍କର କେବେ ହୋଇ ନଥିଲା ।

ଦୀପଙ୍କର ବୁଦ୍ଧଙ୍କୁ ଦେଖି ତାଙ୍କର ଚକ୍ଷୁ କର୍ଣ୍ଣର ବିବାଦ ମେଣ୍ଟିଗଲା । ତାଙ୍କର ମନେ ହେଲା, ସେ ଯେଉଁ ବିଦ୍ୟା ଲାଭ କରିଛନ୍ତି ବା ଯଜ୍ଞକର୍ମ କରୁଛନ୍ତି, ସେଥିରେ କିଛି ଲାଭ ନାହିଁ । ସେଥିରେ ସଂସାରର ଦୁଃଖରୁ ମୁକ୍ତି ଲାଭ ହେବ ନାହିଁ । ଦୀପଙ୍କର ବୁଦ୍ଧଙ୍କ ପରି ସେ ଯଦି ହୋଇ ପାରନ୍ତି, ତା' ହେଲେ ନିଜେ ନିର୍ବାଣ ଲାଭ କରିବା ସଙ୍ଗେ ସଙ୍ଗେ ଲୋକ ସାଧାରଣଙ୍କୁ ମଧ୍ୟ ମୁକ୍ତିର ମାର୍ଗ ଦେଖାଇ ପାରିବେ ।

ଦୀପଙ୍କର ଯେଉଁ ରାସ୍ତାରେ ଆସୁଥିଲେ, ସେ ରାସ୍ତା ସମତଳ ନ ଥିଲା । ଖାଲ, ଢିପ ଥିଲା । ସୁମେଧ ଏହିପରି ରାସ୍ତାର ଏକ ଖାଲ ସ୍ଥାନ ଦେଖି ତା' ଉପରେ ଶୋଇପଡ଼ି ସେ ସ୍ଥାନକୁ ସମତଳ କରିଦେଲେ । ଦୀପଙ୍କର ବ୍ରାହ୍ମଣ ଯୁବକଙ୍କର ଏ ତ୍ୟାଗ ମନୋଭାବ ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲେ, "ହେ ଯୁବକ, ତୁମେ କି'ଣ ଚାହଁ ? ତୁମେ ଯଦି ନିର୍ବାଣ ଲାଭ କରିବାକୁ ଚାହଁ, ତା' ହେଲେ ଏହି ଜନ୍ମରେ ମୁଁ ତୁମକୁ ନିର୍ବାଣର ମାର୍ଗ ଦେଖାଇ ଦେବି ।" ସୁମେଧ କହିଲେ, "ଦୀପଙ୍କର, ଏପରି ନିର୍ବାଣ ମୋର ଲୋଡ଼ାନାହିଁ । ମୁଁ ଯିନା ନିଜେ ମୁକ୍ତି ପାଇଯିବି, ମାତ୍ର ମୋପରି ଦୁଃଖ ଭୋଗ କରୁଥିବା ସଂସାରର କୋଟି କୋଟି ଜୀବନର ମୁଁ କୌଣସି କଲ୍ୟାଣ କରି ପାରିବି ନାହିଁ । ତେଣୁ ଏପରି ନିର୍ବାଣ ଲାଭ କରିବା ମୋ ପକ୍ଷରେ ସ୍ୱାର୍ଥପରତା ହେବ । ମୁଁ ଏପରି ଜ୍ଞାନ ଲାଭ କରିବାକୁ ଚାହେଁ, ଯାହା ବଳରେ ମୁଁ ନିଜେ ନିର୍ବାଣ ଲାଭ କରିବା ସଙ୍ଗେ ସଙ୍ଗେ ପ୍ରାଣୀମାନଙ୍କୁ ନିର୍ବାଣର ମାର୍ଗ ଦେଖାଇ ପାରିବି ।" ସୁମେଧ ବ୍ରାହ୍ମଣଙ୍କର ଏହି କଥା ଶୁଣି ଦୀପଙ୍କର ବୁଦ୍ଧ ତାଙ୍କର କଳ୍ୟାଣ କାମନା କରିଥିଲେ ଏବଂ ଆକାଶରୁ ଦେବତାମାନେ ତାଙ୍କର ମସ୍ତକରେ ପୁଷ୍ପବୃଷ୍ଟି କରିଥିଲେ ।

ଏହି ଦିନଠାରୁ ସୁମେଧ ବ୍ରାହ୍ମଣ ବୋଧିସତ୍ତ୍ୱ ହେଲେ ବା ତାଙ୍କର ହୃଦୟରେ ବୁଦ୍ଧ ହେବାର ପିପାସା ଜାଗ୍ରତ ହେଲା । ବୁଦ୍ଧ ହେବା ପୂର୍ବରୁ ପଶୁ, ପକ୍ଷୀ ବା ମନୁଷ୍ୟରୂପରେ ସଂସାରରେ ସେ ବହୁ ଜନ୍ମ ଲାଭ କରିଥିଲେ ଏବଂ ପ୍ରତି ଜନ୍ମରେ ସେ ଅନ୍ୟମାନଙ୍କୁ ରକ୍ଷା କରିବା ପାଇଁ ବା ଅନ୍ୟର

କଲ୍ୟାଣପାଇଁ ଜୀବନ ଉତ୍ସର୍ଗ କରିଥିଲେ । କେତେବାର ରାଜ-ସିଂହାସନ ଛାଡ଼ି ସନ୍ନ୍ୟାସୀ ହୋଇଥିଲେ ଏବଂ ପ୍ରେମ ଓ ଆତ୍ମତ୍ୟାଗ ବଳରେ ତାଙ୍କର ଶତ୍ରୁ-ମାନଙ୍କୁ ଜିଣିଥିଲେ । ବୋଧିସତ୍ତ୍ୱଙ୍କର ଏହି ବିଭିନ୍ନ ଜନ୍ମର କାହାଣୀ ଜାତକ ଗଳ୍ପ ନାମରେ ସୁପରିଚିତ ।

ଏହି ସୁମେଧ ବ୍ରାହ୍ମଣ ଶେଷଥର ଗୌତମ ବୁଦ୍ଧ ରୂପେ ଜନ୍ମଲାଭ କରିବା ପୂର୍ବରୁ ସ୍ୱର୍ଗରେ ଦେବତାମାନଙ୍କ ମଧ୍ୟରେ ବାସ କରୁଥିଲେ । ସେ ଯେଉଁ ସ୍ୱର୍ଗରେ ବାସ କରୁଥିଲେ, ତା'ର ନାମ ଥିଲା ତୁଷିତ ସ୍ୱର୍ଗ ।



# ସ୍ୱର୍ଗ ସୁଖ ଲୋଡ଼ା ନାହିଁ

ଶାସ୍ତ୍ର ଏବଂ ପୁରାଣମାନଙ୍କରେ ତ୍ରିଭୁବନର କଥା ଲେଖା ଅଛି – ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ । ଯେଉଁମାନେ ମର୍ତ୍ତ୍ୟରେ ଜନ୍ମଲାଭ କରି ନାନା ପାପ ଓ ଦୁଷ୍କର୍ମ କରନ୍ତି, ସେମାନେ ତା'ର ଫଳ ଭୋଗ କରିବା ପାଇଁ ପାତାଳକୁ ଯାଇ ନରକ ଯନ୍ତ୍ରଣା ଭୋଗ କରନ୍ତି । ସେତେବେଳେ ତାଙ୍କର ପ୍ରାୟଶ୍ଚିତ୍ତ ସରିଯାଏ, ପୁଣି ସେମାନେ ଏହି ମର୍ତ୍ତ୍ୟରେ ଜନ୍ମଗ୍ରହଣ କରନ୍ତି ।

ଯେଉଁମାନେ ମର୍ତ୍ତ୍ୟରେ ଜାତ ହୋଇ ପୁଣ୍ୟ କାର୍ଯ୍ୟ କରନ୍ତି, ସେମାନେ ତାଙ୍କର ସୁକୃତର ଫଳ ଭୋଗ କରିବା ପାଇଁ ସ୍ୱର୍ଗକୁ ଯା'ନ୍ତି ଏବଂ ସେଠାରେ ସ୍ୱର୍ଗ ସୁଖ ଭୋଗ କରନ୍ତି, ମାତ୍ର ଏ ସ୍ୱର୍ଗ ସୁଖ ଚିରନ୍ତନ ରହେ ନାହିଁ । ପୁଣ୍ୟଫଳ ସରିଗଲେ ପୁଣି ସେମାନେ ମର୍ତ୍ତ୍ୟରେ ଜନ୍ମ ଲାଭ କରନ୍ତି ଏବଂ ରୋଗ, ଜରା ଓ ମୃତ୍ୟୁର କଷ୍ଟ ଭୋଗ କରନ୍ତି । ସ୍ୱର୍ଗ ଭିତରେ ମଧ୍ୟ କେତୁ ସ୍ୱର୍ଗ ଅଛି । ଯିଏ ଯେତେ ପୁଣ୍ୟ କରିଛି, ସେହି ଅନୁସାରେ ତାକୁ ତଳ ବା ଉପର ସ୍ୱର୍ଗରେ ରହିବାକୁ ପଡ଼େ । ସବା ତଳରେ ଭୁବନେଶ ଦିଗପାଳ ରହି ପୃଥିବୀର ହାଲଚାଲ ବୁଝନ୍ତି ।

ଏହି ଦିଗପାଳମାନଙ୍କ ତଳେ ଥିବା ସବା ଉପର ସ୍ୱର୍ଗର ନାମ ତୃଷିତ ସ୍ୱର୍ଗ । ସବୁଠାରୁ ସଂସାରରେ ବେଶୀ ପୁଣ୍ୟ ଅର୍ଜନ କରିଥିବା ସାଧୁ ସନ୍ଥ ପୁରୁଷମାନେ ଏହି ସ୍ୱର୍ଗରେ ରହନ୍ତି ଏବଂ ଶହ ଶହ ବର୍ଷ ଏଠାରେ ସୁଖ ଭୋଗ କରିବା ପରେ ପୁଣି ପୃଥିବୀରେ ଜନ୍ମଲାଭ କରନ୍ତି ।

ପୂର୍ବ ଜନ୍ମମାନଙ୍କରେ ବହୁ ସୁକୃତ ଅର୍ଜନ କରିଥିବା ଯୋଗୁଁ ବୋଧି-ସତ୍ତ୍ୱ ଏହି ତୁଷିତ ସ୍ୱର୍ଗର ନନ୍ଦନ ବନରେ ରହୁଥିଲେ; ମାତ୍ର ଏ ସୁଖ ଯେତେ ଅଖଣ୍ଡ ଓ ଦୀର୍ଘକାଳ ସ୍ଥାୟୀ ହେଲେ ମଧ୍ୟ, ବୋଧିସତ୍ତ୍ୱଙ୍କୁ ଏହା ସୁଖ ଲାଗିଲା ନାହିଁ । ତାଙ୍କ ମନରେ ସେହି ସୁମେଧ ବ୍ରାହ୍ମଣର ପ୍ରତିଜ୍ଞା କଥା ମନେ ପଡ଼ିଲା । ସେ ଏପରି ଜ୍ଞାନ ଲାଭ କରିବାକୁ ଚାହାନ୍ତି, ଯାହା ବଳରେ ନିଜେ ନିର୍ବାଣ ଲାଭ କରିବା ସଙ୍ଗେ ସଙ୍ଗେ ପ୍ରାଣୀମାନଙ୍କୁ ନିର୍ବାଣର ମାର୍ଗ ଦେଖାଇ ପାରିବେ । ଏ ସ୍ୱର୍ଗ ସୁଖରେ ତ ନିର୍ବାଣ ନାହିଁ । ଏଥିରେ ନିଜର ମୋକ୍ଷ ହେବ ନାହିଁ କି ଅନ୍ୟ ପ୍ରାଣୀମାନଙ୍କୁ ମୋକ୍ଷର ବାଟ ଦେଖାଇ ହେବ ନାହିଁ । ଏ ସୁଖ ଶେଷ ହୋଇଗଲେ ପୁଣି ସଂସାରରେ ଜନ୍ମଲାଭ କରିବାକୁ ହେବ ଏବଂ ଜନ୍ମ, ମୃତ୍ୟୁ, ଜରା, ବ୍ୟାଧିର ଦୁଃଖ ଭୋଗ କରିବାକୁ ପଡ଼ିବ; ତେଣୁ ଏ ସୁଖ ତାଙ୍କର ଲୋଡ଼ା ନାହିଁ । ତାଙ୍କର ସମୟ ଆସିଛି, ଏହି ଶେଷ ଥର ସେ ସଂସାରରେ ଜାତ ହେବେ, ବୁଦ୍ଧ ହେବେ ଏବଂ ନିର୍ବାଣର ଜ୍ଞାନ ପ୍ରଚାର କରିବେ ।

ଏହି କଥା ମନେ ମନେ ସ୍ଥିର କରି ବୋଧିସତ୍ତ୍ୱ ପୃଥିବୀ ଆଡ଼କୁ ଅନାଇଲେ । ତାଙ୍କ ମନରେ ବୁଦ୍ଧତ୍ୱର ପିପାସା ପ୍ରବଳ ହୋଇ ଉଠିଲା । ଏହି ପୃଥିବୀରେ କେଉଁ ସ୍ଥାନରେ ସେ ଜନ୍ମ ନେବେ, କିଏ ତାଙ୍କର ପିତା ଓ କିଏ ତାଙ୍କର ମାତା ହେବେ ଏବଂ କେଉଁ ସମୟରେ ସେ ଜନ୍ମ ନେବେ, ସବୁ ମନରେ ସ୍ଥିର କରି ନେଲେ । ତାଙ୍କର ମନର ସଙ୍କଳ୍ପ କଥା ଜାଣିପାରି ଦେବତାମାନେ ସ୍ୱର୍ଗରେ ଆନନ୍ଦ ଉତ୍ସବ କଲେ ଏବଂ ବୁଦ୍ଧଙ୍କର ଆଗମନର ବାର୍ତ୍ତା ତ୍ରିଭୁବନରେ ଖେଳିଗଲା ।

# କପିଳବାସ୍ତୁରେ ଆଷାଢ଼ ଉତ୍ସବ

ବୋଧିସତ୍ତ୍ୱ ଜମ୍ବୁଦ୍ୱୀପର ସବୁଠାରୁ ରମଣୀୟ ଭୂମି, ଶାକ୍ୟମାନଙ୍କ ରାଜ୍ୟରେ ଜନ୍ମଗ୍ରହଣ କରିବାପାଇଁ ସ୍ଥିର କଲେ । ହିମାଳୟ ପାଦଦେଶରେ ଶାକ୍ୟମାନଙ୍କର ରାଜ୍ୟ ଥିଲା । ଉତ୍ତରରେ ହିମାଳୟର ତୁଷାରାବୃତ ପର୍ବତମାଳା ଏହାର ଶୋଭା ବର୍ଦ୍ଧନ କରୁଥିଲା । ପୂର୍ବରେ ରୋହିଣୀ ନଦୀ, ଦକ୍ଷିଣ ଓ ପଶ୍ଚିମରେ ଅଚିରବତୀ (ବର୍ତ୍ତମାନର ରାପ୍ତି) ନଦୀ ଏହାର ସୀମା-ରେଖାରୂପେ ପ୍ରବାହିତ ହେଉଥିଲା । ହିମାଳୟରୁ ବହୁ ଗିରିନଦୀ ପ୍ରଚୁର ଜଳ ଓ ପଟ୍ଟମାଟି ବୋହି ଆଣୁଥିଲେ । ଉଚ୍ଚ ଶାଳ ବନମାନଙ୍କ ମଧ୍ୟରେ ହରିତ ବର୍ଣ୍ଣର ଶସ୍ୟ-କ୍ଷେତ୍ରମାନ ଶୋଭା ପାଉଥିଲା ଏବଂ ଶସ୍ୟକ୍ଷେତ୍ରମାନଙ୍କ ବାଗ ଆମ୍ବ ଓ ବାଉଁଶର ବଗିଚ୍ଚମାନଙ୍କ ମଧ୍ୟରେ ଛୋଟ ଛୋଟ ଗାଁ-ମାନ ଲୁଚି ଯାଉଥିଲା । ଉର୍ବର ମୃତ୍ତିକା ଓ ଶସ୍ୟଶ୍ୟାମଳ ଭୂମି ଧନ ଧାନ୍ୟରେ ଭରା ଥିଲା ।

ସେତେବେଳେ ଶାକ୍ୟ ରାଜ୍ୟରେ ଚାତୁମା, ସାମଗାମ, ଶୀଳାବତୀ, କପିଳବାସ୍ତୁ ପ୍ରଭୃତି କେତେଗୁଡ଼ିଏ ପ୍ରଧାନ ଗ୍ରାମ ଓ ନଗର ଥିଲା । କୃଷି ଏବଂ ବାଣିଜ୍ୟରେ ଏହିସବୁ ଗ୍ରାମ ଓ ନଗରମାନ ପ୍ରସିଦ୍ଧି ଲାଭ କରିଥିଲା । ମାତ୍ର ସବୁ ଗ୍ରାମ ଓ ନଗର ମଧ୍ୟରେ କପିଳବାସ୍ତୁ ପ୍ରଧାନ ଥିଲା ଏବଂ ଶାକ୍ୟମାନେ ଏହାକୁ ରାଜଧାନୀ କରିଥିଲେ । ପ୍ରମୋଦ ଉଦ୍ୟାନ, ସୁନ୍ଦର ପ୍ରାସାଦ ଓ ପୁଷ୍କରିଣୀ ଏବଂ ପ୍ରଶସ୍ତ ରାଜପଥମାନ କପିଳବାସ୍ତୁ ନଗରର ଶୋଭାବର୍ଦ୍ଧନ କରୁଥିଲେ ଏବଂ ଏହାର ଜନାକୀର୍ଣ୍ଣ ରାଜପଥରେ ହସ୍ତୀ, ଅଶ୍ୱ, ରଥାଦି ଯାନର ଅଭାବ ନ ଥିଲା ।

ଶାକ୍ୟମାନେ ଅତି ସାହସୀ ଏବଂ ଯୋଦ୍ଧା ଥିଲେ । ତାଙ୍କର ରାଜ୍ୟ ଅତି ଶ୍ରେଷ୍ଠ ଥିଲେ ମଧ୍ୟ ସେମାନେ ତାଙ୍କର ପ୍ରତିବେଶୀ ପ୍ରବଳ ପ୍ରତାପୀ ମଗଧ ଓ କୋଶଳ ରାଜାମାନଙ୍କୁ ଭୟ କରୁ ନ ଥିଲେ । ଏହି ଶାକ୍ୟମାନଙ୍କ ଦେଶରୁ ରାଜା ଶୁଦ୍ଧୋଦନ କପିଳବାସ୍ତୁରେ ରାଜତ୍ୱ କରୁଥିଲେ । ସେ ପ୍ରଜାମାନଙ୍କୁ ଖୁବ୍ ସୁଖରେ ପାଳନ କରୁଥିଲେ । ତାଙ୍କର ଦୁଇ ରାଣୀ ମହାମାୟା ଓ ମହାପ୍ରଜାପତି । ସେମାନେ ଦୁଇ ଭଉଣୀ ଥିଲେ ଏବଂ ଦୁହେଁ ଦୁହିଁଙ୍କୁ ଭାରି ସ୍ନେହ କରୁଥିଲେ । ରାଣୀ ମହାମାୟା ରୂପ ଓ ଗୁଣରେ ସମସ୍ତଙ୍କୁ ମୁଗ୍ଧ କରି ରଖିଥିଲେ । ସେ ଦାନ, ସେବା, ବ୍ରତ କରି ପବିତ୍ରଭାବରେ ଜୀବନ କଟାଉଥିଲେ ।

ପ୍ରତିବର୍ଷ କପିଳବାସ୍ତୁରେ ବର୍ଷାର ଆଗମନରେ ଆଷାଢ଼ ଉତ୍ସବ ପାଳିତ ହୁଏ । ଆଷାଢ଼ ପୂର୍ଣ୍ଣିମାକୁ ଲାଗି ସାତଦିନ ଧରି ଖୁବ୍ ଧୁମ୍‌ଧାମ ଓ ମହାନ ମଙ୍ଗଳରେ କପିଳବାସ୍ତୁର ଲୋକେ ଆନନ୍ଦ ଉତ୍ସବ କରନ୍ତି । ସେ ବର୍ଷ ରାଣୀ ମହାମାୟା ମଦ୍ୟପାନରୁ ବିରତ ହୋଇ ମାଳା, ଚନ୍ଦନ ଓ ଅନ୍ୟାନ୍ୟ ସୁଗନ୍ଧ ଦ୍ରବ୍ୟରେ ଶରୀରକୁ ମଣ୍ଡିତ କରି ଆନନ୍ଦ ମନରେ ଉତ୍ସବ ପାଳନ କରୁଥିଲେ । ଉତ୍ସବର ଶେଷ ଦିନ ଶଯ୍ୟାରୁ ଉଠି ସୁଗନ୍ଧ ଜଳରେ ସ୍ନାନ କରି ଓ ସୁନ୍ଦର ଅଳଙ୍କାର ପରିଧାନ କରି ପ୍ରଜାମାନଙ୍କୁ ଚାରିଲକ୍ଷ ସ୍ୱର୍ଣ୍ଣ ମୁଦ୍ରା ବିତରଣ କଲେ ଏବଂ ଦିନ ଶେଷରେ ବ୍ରତର ଆଠଟି ନିୟମକୁ ଗ୍ରହଣ କରି ତାଙ୍କର ସୁସଜ୍ଜିତ-କକ୍ଷରେ ପ୍ରବେଶ କଲେ ।

ସେଦିନ ପୂର୍ଣ୍ଣିମାର ରାତ୍ରି । ଆକାଶରେ ନିର୍ମଳ ଚନ୍ଦ୍ରମା ଓ ପବନରେ ଉତ୍ସବର ଗନ୍ଧ ଭାସି ଆସୁଛି । ରାଣୀ ମହାମାୟା ତାଙ୍କର ହାତୀ-ଦାନ୍ତ-ପଲଙ୍କରେ ଗଭୀର ନିଦ୍ରାରେ ଶୋଇଥିବାବେଳେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ଚାରି ଦିଗପାଳ ଚାରିଦିଗରୁ ଆସି ପଲଙ୍କସୁଦ୍ଧା ତାଙ୍କୁ ହିମାଳୟ ପର୍ବତର ଉପରକୁ ଉଠାଇ ନେଉଛନ୍ତି ଏବଂ ସେଠାରେ ନାନାରଙ୍ଗ ଖଞ୍ଜାଯାଇଥିବା ଏକ ସୁନ୍ଦର ପଥର ଉପରେ ଏକ ପ୍ରକାଣ୍ଡ ଶାଳଗଛ ମୂଳରେ ନେଇ ଥୋଇ ଦେଉଛନ୍ତି । ତା'ପରେ ଏହି ଦିଗପାଳମାନଙ୍କର ସ୍ତ୍ରୀମାନେ ଆସି ତାଙ୍କୁ ଏକ ରମଣୀୟ

ହ୍ରଦରେ ସ୍ନାନ କରାଇ ଦିବ୍ୟ ବସ୍ତ୍ର, ପୁଷ୍ପ ଓ ଅଳଙ୍କାରମାନ ପିନ୍ଧାଇ ଦେଉଛନ୍ତି । ଏହାପରେ ସେମାନେ ତାଙ୍କୁ ଗୋଟିଏ ରୁପାର ପର୍ବତ ଉପରକୁ ନେଇ ପୂର୍ବ ଆଡ଼କୁ ମୁଣ୍ଡ କରାଇ ଶୁଆଇ ଦେଉଛନ୍ତି । ଏହି ସମୟରେ ଅତି ସୁନ୍ଦର ରୂପର ଗୋଟିଏ ଧଳା ହାତୀ ତା'ର ଶୁଣ୍ଢରେ ଗୋଟିଏ ଧଳା ପଦ୍ମଫୁଲ ଧରି ଆନନ୍ଦ-ଧ୍ୱନି କରି ସୁନାର ପାହାଡ଼ରୁ ଏ ରୁପା ପାହାଡ଼-ଆଡକୁ ଚାଲି ଆସୁଚି ଏବଂ ଉତ୍ତର ଦିଗରୁ ଆସି ରାଣୀ ଶୋଇଥିବା ପଲଙ୍କ ଚାରିପାଖେ ତିନିଥର ବୁଲି ଡାହାଣ କଡରେ ରାଣୀଙ୍କୁ ସେହି ଧଳା ପଦ୍ମଫୁଲରେ ଛୁଇଁ ଦେଇ ତାଙ୍କର ଗର୍ଭରେ ପଶି ଯାଉଛି ।

ରାଣୀ ମହାମାୟା ରାଜା ଶୁଦ୍ଧୋଦନଙ୍କୁ ଉଠାଇ ସ୍ୱପ୍ନର ସମସ୍ତ ବିବରଣ କହିଲେ । ସକାଳ ହେଲାରୁ ରାଜା ରାଜ୍ୟର ଚଉଷଠିଜଣ ପ୍ରଧାନ ବ୍ରାହ୍ମଣଙ୍କୁ ଡକାଇ ସେମାନଙ୍କୁ ସୁନ୍ଦର ଭୋଜନରେ ସନ୍ତୁଷ୍ଟ କରି ଏବଂ ସୁନା, ରୁପା ଓ ନାନା ଅଳଙ୍କାର ଦକ୍ଷିଣା ସ୍ୱରୂପ ଦେଇ ସ୍ୱପ୍ନର ଫଳ ବିଷୟରେ ପଚାରିଲେ । ବ୍ରାହ୍ମଣମାନେ କହିଲେ—"ମହାରାଜ, ଚିନ୍ତା କରନ୍ତୁ ନାହିଁ, ଉତ୍ତରଷାଢ଼ା ନକ୍ଷତ୍ରରେ ମହାରାଣୀଙ୍କର ଗର୍ଭାଧାନ ହୋଇଛି । ଏ ଗର୍ଭରୁ ପୁତ୍ର ଜାତ ହେବ । ଏ ପୁତ୍ର ଯଦି ଘରେ ରହିବ, ତା'ହେଲେ ଚକ୍ରବର୍ତ୍ତୀ ରାଜା ହେବ । ଯଦି ଘର ଛାଡ଼ି ସନ୍ନ୍ୟାସୀ ହୋଇଯିବ, ତା'ହେଲେ ବୁଦ୍ଧ ହୋଇ ସମସ୍ତ ଜଗତରେ ଜ୍ଞାନାଲୋକ ବିସ୍ତାର କରିବ ।"

ସ୍ୱପ୍ନ ଫଳ ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇ ରାଜା କହିଲେ, ତାଙ୍କର ଆଉ ଚିନ୍ତାର କାରଣ ନାହିଁ । ଶାକ୍ୟ ବଂଶରେ ଯେଉଁ ପୁତ୍ର ଜାତ ହେବ, ସେ କେବେ ଗୈରିକ ବସ୍ତ୍ର ପିନ୍ଧି ଭିକ୍ଷାର ପାତ୍ର ଧରି ସନ୍ନ୍ୟାସୀ ହୋଇ ପାରିବ ନାହିଁ; ସେ ରାଜ୍ୟର କର୍ତ୍ତବ୍ୟ କରିବ ଏବଂ ନିଶ୍ଚୟ ଚକ୍ରବର୍ତ୍ତୀ ରାଜା ହେବ ।



# ଲୁମ୍ବିନୀ ବନ

କଥିତ ବର୍ଣ୍ଣିତ ଅଛି ଯେ, ବୋଧିସତ୍ତ୍ୱ ଗର୍ଭସ୍ଥ ହେବା ଦିନଠାରୁ ଚାରିଆଡ଼େ ଆନନ୍ଦ ଉଲ୍ଲାସ ଖେଳିଗଲା । ପ୍ରକୃତି ଶୋଭାମୟୀ ହୋଇ ଉଠିଲା ଓ ପୃଥିବୀ ଅଧିକ ଶସ୍ୟଶାଳିନୀ ଓ ସୁନ୍ଦର ଦେଖାଗଲା ।

ରାଣୀ ମହାମାୟା ଖୁବ୍ ଶୁଦ୍ଧ ମନରେ ଏବଂ ନିର୍ମଳ ଚିତ୍ତରେ ପୁତ୍ର ଜନ୍ମର ସମୟକୁ ଅପେକ୍ଷା କରି ରହିଲେ । ସମୟ ନିକଟ ହୋଇଯିବାରୁ ସେତେବେଳର ପ୍ରଥା ଅନୁସାରେ ତାଙ୍କ ପିତୃଗୃହକୁ ଯିବାପାଇଁ ସ୍ଥିର କରି ରାଜା ଶୁଦ୍ଧୋଦନଙ୍କ ଅନୁମତି ମାଗିଲେ । ରାଣୀଙ୍କ ପାଇଁ ଏକ ସୁନାର ପାଲିଙ୍କି ସଜାଗଲା । କପିଳବାସ୍ତୁ ନଗରଠାରୁ ରାଣୀଙ୍କ ପିତୃଗୃହ ଦେବଦାହ ନଗର ପର୍ଯ୍ୟନ୍ତ ରାସ୍ତାର ଦୁଇଧାରରେ ତୋରଣମାନ ହେଲା । ପତାକା ଉଡ଼ାଗଲା । ପୂର୍ଣ୍ଣ କୁମ୍ଭ ଓ କଦଳୀ ଗଛ ପୋତାଗଲା । ଏହିପ୍ରକାର ରାଜ-କର୍ମଚାରୀ ଓ ବହୁ ପରିଜନଙ୍କ ଗହଣରେ ରାଣୀ ଦେବଦାହ ଯାତ୍ରା କଲେ ।

ଦେବଦାହ ଓ କପିଳବାସ୍ତୁ ମଝିରେ ଲୁମ୍ବିନୀ ବନ । ଏହି ସମୟରେ ଲୁମ୍ବିନୀର ଶାଳଗଛମାନଙ୍କରେ ଏତେ ଫୁଲ ଫୁଟିଥିଲା ଯେ ଫୁଲରେ ଗଛରପତ୍ର ସବୁ ଲୁଚି ଯାଇଥିଲା । ଶାଳଗଛ-ଦେହରେ ନାନାଜାତି ଫୁଲଲତାମାନ ମାଡ଼ି ଶୋଭା ବର୍ଦ୍ଧନ କରୁଥିଲେ । ଗଛ ଓ ଲତାର ଡାଳରେ ପଞ୍ଚବର୍ଣ୍ଣୀ ଭ୍ରମର-ମାନେ ଗୁଞ୍ଜନ କରୁଥିଲେ ଓ ନାନା ଜାତି ଓ ନାନା ରଙ୍ଗର ପକ୍ଷୀ ମଧୁର ସ୍ୱରରେ କୂଜନ କରୁଥିଲେ । ଗିରି-ନିର୍ଝରମାନ କୁଳୁ କୁଳୁ ସ୍ୱରରେ ପ୍ରବାହିତ

ହେଉଥିଲା । ହିମାଳୟର ଶୀତଳ ପବନରେ ଫୁଲର ମହକ ଭାସି ଆସୁଥିଲା । ଏପରି ଏକ ସୁନ୍ଦର ସ୍ଥାନ ଛାଡ଼ି ଯିବାପାଇଁ ରାଣୀଙ୍କର ଇଚ୍ଛା ହେଲା ନାହିଁ ।

ରାଣୀ ପାଲିଙ୍କିରୁ ଓହ୍ଲାଇ କିଛି ସମୟ ଶାଳବନର ସୁଶୀତଳ ଛାୟାରେ ବୁଲିବାକୁ ଲାଗିଲେ । ଫୁଲ-ଭାରରେ ନଇଁ ପଡ଼ିଥିବା ଗୋଟିଏ ଶାଳଗଛର ଡାଳକୁ ଧରି ଠିଆ ହୋଇଥିବା ବେଳେ ହଠାତ୍ ତାଙ୍କର ପ୍ରସବ-ବେଦନା ହେଲା । ପରିଚାରିକାମାନେ ବସ୍ତ୍ରର ଆବରଣ କରିଦେଲେ ଏବଂ ଶାଳ ଗଛର ଡାଳକୁ ଧରି ଠିଆ ହୋଇଥିବା ଅବସ୍ଥାରେ ରାଣୀଙ୍କର ଏକ ପୁତ୍ର ଜାତ ହେଲା । ଏହାପରେ ଏକ ବର୍ଣ୍ଣନା ଅଛି ଯେ, ରାଣୀଙ୍କର ଗର୍ଭରୁ ଖସି ପଡ଼ିବାବେଳେ ଏହି ଶିଶୁକୁ ଗୋଟିଏ ସୁନାର ଜାଲିରେ ଚାରିଜଣ ମହାବ୍ରହ୍ମ ଆସି ଧରିନେଲେ ଏବଂ କହିଲେ, 'ମହାରାଣୀ, ସନ୍ତୁଷ୍ଟ ହୁଅ । ତୁମ ଗର୍ଭରୁ ଏକ ମହା ଶକ୍ତିଶାଳୀ ପୁତ୍ର ଜନ୍ମଲାଭ କରିଛି ।' ମହାବ୍ରହ୍ମଙ୍କଠାରୁ ଚାରିଦିଗପାଳ ଆସି କୋମଳ ମୃଗ ଚର୍ମରେ ଗ୍ରହଣ କଲେ ଏବଂ ସେମାନଙ୍କଠାରୁ ଏହି ନବଜାତ ଶିଶୁକୁ ମନୁଷ୍ୟମାନେ ପଟ୍ଟ ବସ୍ତ୍ରରେ ଗ୍ରହଣ କଲେ । ମନୁଷ୍ୟଙ୍କ ହାତରୁ ଖସିଯାଇ ଏହି ନବଜାତ ଶିଶୁ ଭୂମି ଉପରେ ଠିଆ ହୋଇ ପୂର୍ବ ଦିଗ ଆଡ଼କୁ ଅନାଇଲେ ଏବଂ କ୍ଷଣକ ମଧ୍ୟରେ ତାଙ୍କର ଆଖି ଆଗରେ ସମସ୍ତ ଜଗତ ଚଉପର ଦିଶିଗଲା । ସେ ଦଶ ଦିଗ ଆଡ଼କୁ ଦୃଷ୍ଟିପାତ କରି ଉତ୍ତର ଦିଗ ଅଭିମୁଖରେ ସାତପାଦ ଚାଲିଗଲେ ଏବଂ 'ମୁଁ ଏ ଜଗତରେ ସର୍ବଶ୍ରେଷ୍ଠ ହେବି' ବୋଲି କହି ସିଂହନାଦ କଲେ । ତାଙ୍କର ଏହି ସାତ ପାଦ ବାଟରେ ସାତଟି ପଦ୍ମଫୁଲ ଫୁଟିଲା ।

ଲୁମ୍ବିନୀ ବନରେ ଯେଉଁ ସମୟରେ ବୋଧିସତ୍ତ୍ୱଙ୍କର ଜନ୍ମ ହେଲା, ଠିକ ସେହି ସମୟରେ ତାଙ୍କର ଭବିଷ୍ୟତର ସ୍ତ୍ରୀ ଯଶୋଧରା, ବିଶ୍ୱସ୍ତ ଅନୁଚର ଛନ୍ଦକ, ତାଙ୍କର ଅଶ୍ୱ କନ୍ଥକ ଏବଂ ବୋଧିଦ୍ରୁମର ଜନ୍ମ ହେଲା । ସାଗର ଓ ଧରଣୀର ପୃଷ୍ଠରେ ଏକ ନୂତନ ମଳୟ ପ୍ରବାହିତ ହେଲା ।

ଏ ପୁତ୍ର ଜାତ ହେବାର ସମ୍ବାଦ ବିଜୁଳିବେଗରେ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ କପିଳବାସ୍ତୁ ଓ ଦେବଦାହର ଲୋକମାନେ ଲୁମ୍ବିନୀ ବନ

ଆଡ଼କୁ ଦୌଡ଼ିଲେ । ରାଜା ଶୁଦ୍ଧୋଦନ ତାଙ୍କର ଅମାତ୍ୟମାନଙ୍କ ଗହଣରେ ପହଞ୍ଚିଲେ । ଏକ ବରାଟ ପଟୁଆରରେ ରାଣୀ ଏବଂ ତାଙ୍କର ନବଜାତ ଶିଶୁକୁ ରାଜପ୍ରାସାଦକୁ ଅଣାଗଲା ।

× × × ×

ପୂର୍ବର ଏ ଲୁମ୍ବିନୀ ବନ ଆଉ ନାହିଁ । ଏବେ ନେପାଳ ତରାଇରେ ରୁମ୍ମିନଦେଈ ବୋଲି ଏକ ସ୍ଥାନ ଅଛି । ଉତ୍ତର ପ୍ରଦେଶ ଗୋରଖପୁର ଜିଲ୍ଲାର ନୌତନଵା ଷ୍ଟେସନର ଦଶମାଇଲ ପଶ୍ଚିମକୁ ଏହି ସ୍ଥାନର ଅବସ୍ଥିତି । ଏଠାରେ ମହାରାଜା ଅଶୋକଙ୍କ ନିର୍ମିତ ପଥରବେଢ଼ା ମଧ୍ୟରେ ଏକ ସ୍ତମ୍ଭ ଅଛି । ଏଠାରେ ଅଶୋକଙ୍କର ଏକ ଖୋଦିତ ଲିପିରେ କୁହାଯାଇଛି, "ଦେବତାଙ୍କ ପ୍ରିୟଦର୍ଶୀ ରାଜା ତାଙ୍କ ରାଜ୍ୟାଭିଷେକର ୨୦ ବର୍ଷ ପରେ ନିଜେ ଏହି ସ୍ଥାନକୁ ଆସି ପୂଜା କରିଥିଲେ । ଏଠାରେ ଶାକ୍ୟ ମୁନି ବୁଦ୍ଧଙ୍କର ଜନ୍ମ ହୋଇଥିଲା । ତେଣୁ ଏଠାରେ ସେ ପଥରର ଏକ ପାଚେରି କରି ପଥରର ଏକ ସ୍ତମ୍ଭ ନିର୍ମାଣ କରାଇଛନ୍ତି । ଏଠାରେ ଭଗବାନ ଜାତ ହୋଇଥିବାରୁ ଏ ଗ୍ରାମର ଖଜଣା ଛାଡ଼ କରାଗଲା ।"

ଏବେ ରୁମ୍ମିନଦେଈ ବୌଦ୍ଧମାନଙ୍କର ଚାରି ପ୍ରଧାନ ତୀର୍ଥ ସ୍ଥଳ ମଧ୍ୟରୁ ଅନ୍ୟତମରୂପେ ପରିଗଣିତ ।



# ଚକ୍ରବର୍ତ୍ତୀ ରାଜା ନୁହେଁ, ବୁଦ୍ଧ

ଏହି ସମୟରେ ହିମାଳୟରେ କାଳଦେବଳ ନାମରେ ଜଣେ ଋଷି ତପସ୍ୟା କରୁଥିଲେ । ସେ ପ୍ରକୃତିର ଏ ସୌନ୍ଦର୍ଯ୍ୟ ଓ ସ୍ୱର୍ଗଅପେକ୍ଷା ଆନନ୍ଦ ଉତ୍ସବ ହେଉଥିବାର ଅନୁଭବ କରି ଜାଣିପାରିଲେ ଯେ ରାଜା ଶୁଦ୍ଧୋଦନଙ୍କର ଏକ ମହାଶକ୍ତିଶାଳୀ ପୁତ୍ର ଜାତ ହୋଇଛି । କାଳଦେବଳ ରାଜା ଶୁଦ୍ଧୋଦନଙ୍କର କୁଳଗୁରୁ ଥିଲେ, ତେଣୁ ସେ ମୁହୂର୍ତ୍ତେ ମାତ୍ର ସମୟ ନଷ୍ଟ ନ କରି ନବଜାତ ଶିଶୁକୁ ଦେଖିବାପାଇଁ କପିଳବାସ୍ତୁ ଯାତ୍ରା କଲେ ।

ରାଜପ୍ରାସାଦରେ କାଳଦେବଳଙ୍କୁ ଦେଖି ତାଙ୍କୁ ବହୁ ମାନ୍ୟ କରି ରାଜା ତାଙ୍କର ଆସିବାର କାରଣ ପଚାରିଲେ । ପୁତ୍ରକୁ ନିଜ କୋଳରେ ଧରି ତାଙ୍କୁ ଆଣି ଦେଖାଇଲେ ଏବଂ ଚରଣରେ ଧୂଳି ଦେଇ ଆଶୀର୍ବାଦ କରିବାପାଇଁ ଅନୁରୋଧ କଲେ । ଋଷି କାଳଦେବଳ ଆଶୀର୍ବାଦ କରିବେ କ'ଣ, ଶିଶୁର ପାଦକୁ ନିଜ ମୁଣ୍ଡରେ ନେଇ ଲଗାଇଲେ ଏବଂ କିଛି ସମୟ ପରେ କାନ୍ଦି ଉଠିଲେ । ରାଜା ଏହା ଦେଖି ସ୍ତମ୍ଭିତ । ଏକ ଅଜଣା ଭୟରେ ତାଙ୍କର ହୃଦୟ କମ୍ପି ଉଠିଲା । ହାତ ଯୋଡ଼ି ଋଷିଙ୍କୁ ପଚାରିଲେ, "ଆପଣ ମୋର ହିତକାମୀ ଗୁରୁ । ମୋର ପୁତ୍ର ବା ମୋ ବଂଶ ଉପରେ କି ବିପଦ ପଡ଼ିବ ବୋଲି ଆପଣ ଆଶଙ୍କା କରି ଏପରି ଆକୁଳ ହେଉଛନ୍ତି, ମୋତେ କହନ୍ତୁ ।" କାଳଦେବଳ କହିଲେ, "ରାଜା ଶୁଦ୍ଧୋଦନ, ତୁମେ ଚିନ୍ତିତ ହୁଅ ନାହିଁ । ତୁମର କୁଳରେ ଯେଉଁ ପୁତ୍ର ଜାତ ହୋଇଛି, ତା'ର ସମକକ୍ଷ ହେବାପାଇଁ ଏ ତ୍ରିଭୁବନରେ କେହି ନାହିଁ । ତା'ର ଯଶ ଦିନେ ସମଗ୍ର ଜଗତରେ ବିସ୍ତାରିତ ହେବ । ସେ ଜଗତର ଶ୍ରେଷ୍ଠଜ୍ଞାନ ବା ବୁଦ୍ଧତ୍ୱ ଲାଭ କରିବ । ମୋର କାନ୍ଦିବାର କାରଣ

ହେଉଛୁ, ମୁଁ ଆଉ ବେଶୀ ଦିନ ବଞ୍ଚିବି ନାହିଁ, ତେଣୁ ସେ ବୁଦ୍ଧ ହେବା ମୁଁ ଦେଖି ପାରିବି ନାହିଁ ।” ଏତକ କହି କାଳଦେବଳ ଶିଶୁକୁ ପୁଣି ପ୍ରଣିପାତ କରି ରାଜାଙ୍କଠାରୁ ବିଦାୟ ନେଇ ଚାଲିଗଲେ ।

କାଳଦେବଳ ପ୍ରଥମ ବ୍ୟକ୍ତି, ଯେ କି ରାଜପୁତ୍ର ଗୌତମ ବୁଦ୍ଧ ହେବେ ବୋଲି ନିଶ୍ଚିତଭାବରେ କହିଥିଲେ ।

ଜନ୍ମର ପଞ୍ଚମ ଦିନ ବୋଧିସତ୍ତ୍ୱଙ୍କର ନାମକରଣ ଉତ୍ସବ ପାଳିତ ହେଲା । ତାଙ୍କର ନାମ ସିଦ୍ଧାର୍ଥ ଗୌତମ ରଖାଗଲା । ଗନ୍ଧ, ଚନ୍ଦନ ଓ ପୁଷ୍ପରେ ରାଜ-ପ୍ରାସାଦକୁ ସଜ୍ଜିତ କରି ରାଜା ୧୦୮ ଜଣ ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ଆଣିଲେ । ସୁଭୋଜନ ଓ ଦକ୍ଷିଣା ଦେଇ ଏମାନଙ୍କୁ ସତ୍କାର କରିବା ପରେ ପୁତ୍ରର ଭବିଷ୍ୟତ କ'ଣ ହେବ ବୋଲି ପଚାରିଲେ । ଆଠଜଣ ବ୍ରାହ୍ମଣ ଥିଲେ, ଯେଉଁ-ମାନେ ଭବିଷ୍ୟତ କହିବା ବିଷୟରେ ଧୁରନ୍ଧର । ଏମାନଙ୍କ ମଧ୍ୟରୁ ସାତଜଣ ଦୁଇଟି ଆଙ୍ଗୁଠି ଦେଖାଇ କହିଲେ, “ମହାରାଜ, ଏ ଅତି ଲକ୍ଷଣବନ୍ତ ପୁରୁଷ । ଏ ଯଦି ଘରେ ରହେ, ତା'ହେଲେ ଚକ୍ରବର୍ତ୍ତୀ ରାଜା ହେବ । ଯଦି ଘର ଛାଡ଼ି ଚାଲିଯିବ, ତା'ହେଲେ ବୁଦ୍ଧ ହେବ ।” ମାତ୍ର ଏମାନଙ୍କଠାରୁ ସବୁଠାରୁ କମ୍ ବୟସର ଅଷ୍ଟମ ଲୋକଟି କହିଲା, “ମହାରାଜ, ମୁଁ ନିଶ୍ଚିତ ଭାବରେ କହିପାରେ ଯେ, ଏ ପୁରୁଷ କେବେ ଘରେ ରହିବ ନାହିଁ । ଏ ନିଶ୍ଚୟ ବୁଦ୍ଧ ହେବ । ବୃଦ୍ଧ, ରୋଗୀ, ମୃତବ୍ୟକ୍ତି ଓ ସନ୍ନ୍ୟାସୀକୁ ଦେଖି ଏ ଗୃହ ତ୍ୟାଗ କରିବ ।”

ଏହି ଶେଷୋକ୍ତ ବ୍ୟକ୍ତିଙ୍କ ନାମ କୌଣ୍ଡିନ୍ୟ । ବୁଦ୍ଧଙ୍କର ବହୁ ପୂର୍ବରୁ ଏ ଗୃହତ୍ୟାଗ କରିଥିଲେ । ସାରନାଥଠାରେ ଧର୍ମ ପ୍ରଚାର କଲାପରେ ବୁଦ୍ଧଙ୍କର ପ୍ରଥମ ପାଞ୍ଚଜଣ ଶିଷ୍ୟଙ୍କ ମଧ୍ୟରେ କୌଣ୍ଡିନ୍ୟ ପ୍ରଧାନ ଥିଲେ ।

ରାଜା ଶୁଦ୍ଧୋଦନ ପୁଣି ମନେ ମନେ ପ୍ରତିଜ୍ଞା କଲେ, “ନା, ତା' କେବେ ହୋଇ ପାରିବ ନାହିଁ । ମୋର ପୁତ୍ର ରାଜଧର୍ମ ତ୍ୟଜି ସନ୍ନ୍ୟାସୀର ଦୀକ୍ଷା ଗ୍ରହଣ କରିବ, ଏହା କେବେ ହେବ ନାହିଁ । ମୁଁ ତାକୁ କେବେ ରୋଗ, ଜରା ବା ମୃତ୍ୟୁ ଦେଖିବାକୁ ଦେବି ନାହିଁ । ପ୍ରହରୀ ବେଷ୍ଟିତ ରାଜପ୍ରାସାଦ ମଧ୍ୟରେ ତାକୁ କ୍ଷାତ୍ର ଧର୍ମ ଶିକ୍ଷା କରିବାକୁ ହେବ ।”

# ପରମ କାରୁଣିକ

ଗୌତମ ଜନ୍ମ ନେବା ପରେ ରାଣୀ ମହାମାୟା କ୍ରମେ ଦୁର୍ବଳ ହୋଇପଡ଼ିଲେ ଏବଂ ଜନ୍ମର ସାତଦିନ ପରେ ତାଙ୍କର ଭଉଣୀ ରାଣୀ ମହାପ୍ରଜାପତିଙ୍କ ହାତରେ ପୁଅକୁ ସମର୍ପି ଦେଇ ଦେହତ୍ୟାଗ କଲେ । କଥିତ ଅଛି ଯେ, ବୁଦ୍ଧଙ୍କର ମାତୃଗର୍ଭରେ ବେଶୀ ଦିନ ବଢ଼ିବାର ସୌଭାଗ୍ୟ କାହାର ଘଟେ ନାହିଁ । ଯେଉଁ ଗର୍ଭରେ ବୋଧିସତ୍ତ୍ୱ ରହନ୍ତି, ତାହା ମନ୍ଦିର ସଙ୍ଗେ ସମାନ ଏବଂ ସେ ଗର୍ଭରେ ଅନ୍ୟ କୌଣସି ପ୍ରାଣୀ ରହି ପାରେ ନାହିଁ ବା ଉପଭୋଗ କରି ପାରେ ନାହିଁ । ତେଣୁ ବୋଧିସତ୍ତ୍ୱଙ୍କ ଜନ୍ମର ସାତଦିନ ପରେ ତାଙ୍କର ମାତାଙ୍କର ମୃତ୍ୟୁ ହୁଏ । ଗୌତମଙ୍କ ମାତାଙ୍କର ମଧ୍ୟ ସେଇଆ ହେଲା ଏବଂ ମୃତ୍ୟୁ ପରେ ସେ ତୁଷିତ ସ୍ୱର୍ଗରେ ବାସକଲେ ।

ଗୌତମ ତାଙ୍କର ବିମାତା ମହାପ୍ରଜାପତିଙ୍କ ଯତ୍ନରେ ବଢ଼ିବାକୁ ଲାଗିଲେ । ଦାସ ଦାସୀଙ୍କର ଅଭାବ ନଥିଲା । ମାତୃହୀନ ସନ୍ତାନ ଯେପରି ମାଆର ଅଭାବ ଅନୁଭବ ନ କରେ, ସେଥିପାଇଁ ରାଜା ଶୁଦ୍ଧୋଦନ ଓ ରାଣୀ ମହାପ୍ରଜାପତି ସଯତ୍ନ ଦୃଷ୍ଟି ଦେଉଥିଲେ ।

ଗୌତମଙ୍କୁ ସେତେବେଳେ ପାଞ୍ଚବର୍ଷ ବୟସ । କପିଳବାସ୍ତୁରେ ଭୂମିକର୍ଷଣ ଉତ୍ସବ ପାଳିତ ହେଉଥାଏ । ଉତ୍ସବ ଦିନରେ ନଗରର ଦେବତାମାନଙ୍କୁ ବିମାନରେ ସଜ୍ଜିତ କରାଗଲା । ମନ୍ତ୍ରୀ, ରାଜକର୍ମଚାରୀ ଓ ଅନ୍ୟ ପ୍ରଜାମାନେ ନବ ବସ୍ତ୍ର ପରିଧାନ କରି, ଗନ୍ଧ ମାଲ୍ୟାଦିରେ ଭୂଷିତ ହୋଇ ରାଜ, ପ୍ରାସାଦରେ ଜମା ହେଲେ । ରାଜାଙ୍କର କ୍ଷେତରେ ଏକ ହଜାର ଲଙ୍ଗଳ

ଚଳୁଥିଲା । ସେଥିପାଇଁ ହଜାରେ ଲଙ୍ଗଳ ଓ ହଜାରେ ହଳ ବଳଦ ଆସିଲେ । ସେଥି ମଧ୍ୟରୁ ୧୦୭ଟି ହଳରେ ରୁପା ବସିଥିଲା ଓ ରୁପାର ଦଉଡ଼ିରେ ବଳଦ-ମାନେ ଯୋଚ୍ଚ ହୋଇଥିଲେ । କେବଳ ଗୋଟିଏ ହଳରେ ସୁନା ଛୁଆଣି ହୋଇଥିଲା ଏବଂ ବଳଦଙ୍କ ଶିଙ୍ଗରେ ସୁନା ଖଣ୍ଡା ହୋଇଥିଲା । ରଜା ନିଜେ ଏହି ହଳଟି ଧରିଥିଲେ ।

ଏହି ବର୍ଷଣ ଉତ୍ସବ ଦେଖିବା ପାଇଁ ରାଜପୁତ୍ର ଗୌତମଙ୍କୁ ନିଆଗଲା । କ୍ଷେତର ଗୋଟିଏ କୋଣରେ ଗୋଟିଏ ଝଙ୍କାଳିଆ ଜାମୁଗଛ ଥିଲା । ସେହି ଝଙ୍କାଳିଆ ଜାମୁଗଛରେ ବୁଢ଼ୀଆ ଟାଣି ତଳମୂଳରେ ଶେଯ ବିଛାଇ ତା' ଉପରେ ତାଙ୍କୁ ବସାଇ ଦିଆଗଲା ଏବଂ ପରିଚାରିକାମାନେ ତାଙ୍କ ପାଖରେ ଜଗି ରହିଲେ ।

କ୍ଷେତରେ ହଳ ଚାଲିଥିବାବେଳେ ମାଟିଭିତରୁ ଗୋଟିଏ ସାପ ଓ ଗୋଟିଏ ବେଙ୍ଗ ବାହାରିଲେ । ସାପଟିକୁ ସାଙ୍ଗେ ସାଙ୍ଗେ ମାରି ଦିଆଗଲା ଏବଂ ବେଙ୍ଗକୁ ଖାଇବାପାଇଁ ଜଣେ ହଳୁଆ ନେଇଗଲା । ଆଉ ଗୋଟିଏ ଏଣ୍ଡୁଅ ଦୌଡ଼ି ଚାଲି ଯାଉଥିବାବେଳେ ତାକୁ ହଳ କରୁଥିବା ଜଣେ ଲୋକ ଢୋଳ୍ଲ-ଯାଇ ବାଡ଼େଇ ମାରି ଦେଲା । ଜୀବନର ଏ ଅଳ୍ପକାଳ ମଧ୍ୟରେ ଗୌତମ ଏପରି ଦୃଶ୍ୟ କେବେ ଦେଖି ନ ଥିଲେ । ତାଙ୍କ ମନରେ ହଠାତ୍ ଏକ ଭାବାନ୍ତର ଦେଖାଗଲା । ସେ ସେହି ଜାମୁଗଛ ମୂଳରେ ଧ୍ୟାନରେ ବସିଗଲେ ଏବଂ ଏଥିରେ ଏତେ ତନ୍ମୟ ହୋଇଗଲେ ଯେ, ତାଙ୍କ ଚାରିପାଖେ କ'ଣ ଘଟୁଛି ଦେଖି ପାରିଲେ ନାହିଁ । ପରିଚାରିକାମାନେ ଅନ୍ୟ ଆଡ଼େ ଯାଇ ଉତ୍ସବ ଦେଖୁ-ଥିଲେ । ଖରା ଗଡ଼ିଗଲା ପରେ ସେମାନେ ଫେରି ଦେଖନ୍ତି ଯେ, ରାଜକୁମାର ଏପରି ଅବସ୍ଥାରେ ବସିଛନ୍ତି । ସବୁ ଗଛର ଛାଇ ଲମ୍ବ ହୋଇ ପଡ଼ିଥିବାବେଳେ ଜାମୁଗଛର ଛାଇ ସେହିପରି ଗୋଲାକାରରେ ରହିଛି । ସେମାନେ ସଙ୍ଗେ ସଙ୍ଗେ ରଜାଙ୍କୁ ଯାଇ ଖବର ଦେଲେ ଏବଂ ରଜା ଯାଇ ଦେଖିଲେ ଯେ ତାଙ୍କ ପୁତ୍ର ଯେଉଁ ସମାଧିରେ ବସିଛି, ବଡ଼ ବଡ଼ ଯୋଗୀ ଓ ସନ୍ନ୍ୟାସୀମାନଙ୍କ ପକ୍ଷରେ ତାହା କେବଳ ସମ୍ଭବ । ପୁତ୍ର ପ୍ରତି ତାଙ୍କର ମୁଣ୍ଡ ଆପଣାଛାଏଁ ନଇଁଗଲା ।

ଆଜି ଦିନେ ଗୌତମ ତାଙ୍କର ସଙ୍ଗୀମାନଙ୍କ ସହିତ ରାଜପ୍ରାସାଦର ଉଦ୍ୟାନରେ ଖେଳୁଥିବାବେଳେ, ଆକାଶରେ ଦଳେ ହଂସ ମଧୁର ନାଦ କରି ଉଡ଼ି ଯାଉଥିବାର ଦେଖିଲେ । ବସନ୍ତର ଆଗମନରେ ଏ ହଂସମାନେ ହିମାଳୟର ମାନସରୋବର ଆଡକୁ ଉଡ଼ି ଯାଉଥିଲେ । ମାନସରୋବରର ସୌନ୍ଦର୍ଯ୍ୟ ଓ ନୀଳାକାଶ ତାଙ୍କ ଡେଣାରେ କୁହୁକ ଲଗାଇ ଦେଉଥିଲା । ଏହି ସମୟରେ ଗୌତମ ଦେଖିଲେ ଯେ, ହଠାତ୍ କୋଟିଏ ଶର ଯାଇ ହଂସର ଡେଣାରେ ବାଜିଲା ଏବଂ କରୁଣ ସ୍ୱର କରି ହଂସଟି ଉଦ୍ୟାନର ଗୋଲାପ ବଣ ଭିତରେ ଖସି ପଡ଼ିଲା । ସଙ୍ଗେ ସଙ୍ଗେ ଗୌତମ ଯାଇ ହଂସଟିକୁ ଗୋଟାଇ ଆଣିଲେ । ଧୀରେ ଧୀରେ ତା'ର ଡେଣାରୁ ଶରଟାକୁ କାଢ଼ି ନେଲେ । ହଂସକୁ କୋଳରେ ରଖି ପିଇବାକୁ ପାଣି ଦେଇ ତା'ର ଶୁଶ୍ରୂଷା କରିବାକୁ ଲାଗିଲେ । କ୍ରମେ ରାଜକୁମାରଙ୍କ ଶୁଶ୍ରୂଷାରେ ହଂସଟି ଭଲ ହୋଇଗଲା ।

ଏ ହଂସକୁ ଯେ ଶରବିଦ୍ଧ କରିଥିଲା, ତା'ର ନାମ ଦେବଦତ୍ତ । ସେ ଯେତେବେଳେ ଜାଣି ପାରିଲା ଯେ ହଂସଟିକୁ ସିଦ୍ଧାର୍ଥ ଗୋଟାଇ ନେଇ ରଖିଛନ୍ତି, ତାଙ୍କ ପାଖକୁ ଯାଇ କହିଲା, "କୁମାର, ମୋର ହଂସକୁ ଫେରାଇ ଦିଅ । ସେ ହଂସକୁ ମୁଁ ଶର ମାରିଛି । ସେ ଜୀଇଥାଉ ବା ମରିଥାଉ ସେ ହଂସର ମାଲିକ ହେଉଛି ମୁଁ ।" ସିଦ୍ଧାର୍ଥ କହିଲେ, "ତୁମେ ଏ ହଂସର ମାଲିକ ହୋଇ ପାରିବ ନାହିଁ । ମୋର ସ୍ନେହ ଓ ଶୁଶ୍ରୂଷାରେ ଏ ହଂସ ତା'ର ଜୀବନ ଫେରି ପାଇଛି । ଚାଲ ଅନ୍ୟମାନଙ୍କୁ ପଚାରିବା; ସେମାନେ ଯାହା କହିବେ, ତାହା ହେବ ।" ପଣ୍ଡିତମାନଙ୍କୁ ପଚାରାଗଲା । ସେମାନେ କହିଲେ, "ମାରିବାର ଲୋକେ ତ ବହୁତ ଅଛନ୍ତି, ମାତ୍ର ଯେ ଜୀବନ ଦେଇଛି, ସେହି କେବଳ ହଂସର ମାଲିକ ହେବାକୁ ଯୋଗ୍ୟ ।"

ସିଦ୍ଧାର୍ଥ ହଂସଟିକୁ ନେଇ ପୁଣି ନୀଳାକାଶ ଆଡକୁ ଉଡ଼ାଇ ଦେଲେ । ଯେଉଁ ଦୟା ବା କରୁଣାର ପାଇଁ ସେ ପରବର୍ତ୍ତୀ କାଳରେ ବୁଦ୍ଧତ୍ୱରେ ବିଶ୍ୱରେ ଖ୍ୟାତି ଲାଭ କଲେ ଏବଂ ଯେଉଁଥିପାଇଁ ତାଙ୍କୁ ପରମ କାରୁଣିକ ବୋଲି କୁହାଯାଏ, ଏହି ଘଟଣାରୁ ପ୍ରଥମେ ତାଙ୍କ ମନରେ ସେହି କରୁଣାର ଅଙ୍କୁର ଉଦ୍ରେକ ହେଲା ।



# ଯଶୋଧାରାଙ୍କ ସ୍ୱୟମ୍ବର

ସିଦ୍ଧାର୍ଥ କ୍ରମେ ଯୁବକ ହେଲେ । ସେ କିପରି ରାଜପ୍ରାସାଦର ବିଳାସ ମଧ୍ୟରେ ରହି ସଂସାରର ଦୁଃଖ ଭୁଲିଯାନ୍ତୁ ଏବଂ ଚକ୍ରବର୍ତ୍ତୀ ରାଜା ହେବାପାଇଁ ମନ ବଳାନ୍ତୁ, ସେଥିପାଇଁ ରାଜା ଶୁଦ୍ଧୋଦନ ସମସ୍ତ ଚେଷ୍ଟା କଲେ ।

ଗ୍ରୀଷ୍ମ, ଶୀତ ଓ ବର୍ଷା ଋତୁ କଟାଇବାପାଇଁ ତାଙ୍କ ନିମନ୍ତେ ତିନୋଟି ସୁନ୍ଦର ପ୍ରାସାଦ ନିର୍ମିତ ହେଲା । ରୋହିଣୀ ନଦୀର କୂଳରେ ମାର୍ବଲ ପଥରରେ ଗ୍ରୀଷ୍ମ ପ୍ରାସାଦ ନିର୍ମିତ ହେଲା । ଏହାର ଦୁଆର, ଝରକା ଏପରି ଭାବରେ କରାଯାଇଥିଲା ଯେ, ଖରାର ତାପ ଏହା ଭିତରକୁ ପଶି ପାରୁ ନ ଥିଲା, ମାତ୍ର ପର୍ବତର ଶୀତଳ ପବନ ପଶି ସବୁବେଳେ ପ୍ରାସାଦ ଭିତରକୁ ଥଣ୍ଡା ରଖୁଥିଲା । ଏହାର ଚାରି ପାଖରେ ଛାଇ କରୁଥିବା ବଡ ବଡ ଗଛ ଓ ସୁନ୍ଦର ଫୁଲ ଗଛମାନ ଲଗା ଯାଇଥିଲା । ଉଦ୍ୟାନ ମଧ୍ୟରେ ଶ୍ୱେତ ପଦ୍ମର ପୁଷ୍କରିଣୀ ଥିଲା । ଶୀତ ଓ ବର୍ଷା ଋତୁପାଇଁ ଏହିପରି ସୁନ୍ଦର ପ୍ରାସାଦମାନ କରାଯାଇଥିଲା ।

କୁମାରଙ୍କ ମନର ଆମୋଦ ପାଇଁ ବହୁ ତରୁଣ ସଙ୍ଗୀ, ମୃଦଙ୍ଗୀ ନର୍ତ୍ତକୀ, ବିଦୂଷକ, କବି ଓ ପରିଚାରିକାମାନଙ୍କୁ ନିଯୁକ୍ତ କରାଗଲା । ବାରାଣସୀର ସୁନ୍ଦର ପଟ୍ଟବସ୍ତ୍ର ତାଙ୍କର ପରିଧେୟ ପାଇଁ ଅଣା ଯାଉଥିଲା ।

କିନ୍ତୁ ଏ ସବୁ ଆମୋଦ ପ୍ରମୋଦ ମଧ୍ୟରେ ବେଳେ ବେଳେ ସିଦ୍ଧାର୍ଥଙ୍କୁ ଏକୁଟିଆ ରହିବାପାଇଁ ଇଚ୍ଛା ହୁଏ । ସେ ସମସ୍ତଙ୍କୁ ନିଜ କକ୍ଷରୁ ଅଲଗା କରି

ଉଦ୍ୟାନ ବା ରାଜୋଦ୍ୟାନର କୌଣସି ନିଭୃତ ସ୍ଥାନକୁ ଯାଇ ଧ୍ୟାନମଗ୍ନ ହୋଇ-ଯାଆନ୍ତି । ଏ ସବୁ ଶୁଣି ରାଜାଙ୍କ ମନରେ ଶାନ୍ତି ଆସେ ନାହିଁ । ସେ ପୁଣି ବିଳାସର ନୂଆ ନୂଆ କୌଶଳ ଖଞ୍ଜିବା ପାଇଁ ଲାଗିଥାନ୍ତି । କିଛିଦିନ ସିଦ୍ଧାର୍ଥଙ୍କ ମନ ଭୁଲିଯାଏ । ପୁଣି ସେ ଅନ୍ୟମନସ୍କ ହୋଇପଡ଼ନ୍ତି ।

ଏହାର ପ୍ରତିକାର କ'ଣ ହୋଇପାରିବ ବୋଲି ରାଜା ଦିନେ ତାଙ୍କର ମନ୍ତ୍ରୀମାନଙ୍କୁ ପଚାରିଲେ । ମନ୍ତ୍ରୀମାନେ କହିଲେ, "ମହାରାଜ, କୁମାର ବୟସ୍କ । ଏକ ସୁନ୍ଦରୀ କନ୍ୟା ସହ ତାଙ୍କର ବିବାହ କରି ଦିଅନ୍ତୁ । ନିଜର ସ୍ତ୍ରୀ, ନିଜର ପରିବାର ହେବା ପରେ ମନ ଘର କୁ ଧରି ରହିବ ନୁହେଁ କି ?" ରାଜାଙ୍କର ମନକୁ ଏକଥା ପାଇଲା । ସେ ମନ୍ତ୍ରୀମାନଙ୍କ ସହିତ ଆଲୋଚନା କରି ସ୍ଥିର କଲେ ଯେ, ରାଜ୍ୟର ସମ୍ଭ୍ରାନ୍ତବଂଶୀୟ ଅବିବାହିତା କନ୍ୟାମାନଙ୍କର ଏକ କ୍ରୀଡ଼ା ପ୍ରତିଯୋଗିତା କରାଯିବ ଏବଂ ସିଦ୍ଧାର୍ଥ ପୁରସ୍କାର ବିତରଣ କରିବେ । ତାଙ୍କର ମନ ଯାହା ପ୍ରତି ଆକୃଷ୍ଟ ହେବ, ତାହାର ସହିତ ତାଙ୍କର ବିବାହ କରାଯିବ ।

କ୍ରୀଡ଼ା ପ୍ରତିଯୋଗିତା ହେଲା ଏବଂ ଯଶସ୍ୱିନୀମାନଙ୍କୁ ସିଦ୍ଧାର୍ଥ ପୁରସ୍କାର ବାଣ୍ଟିଲେ । ଜଣ ଜଣ ହୋଇ କେତେ ଝିଅ ଚାଲିଗଲେ, ମାତ୍ର ସିଦ୍ଧାର୍ଥଙ୍କ ମୁହଁ ବା ଆଖିର କୌଣସି ପରିବର୍ତ୍ତନ ହେଲା ନାହିଁ । ଶେଷକୁ ଏକ ତରୁଣୀ ତା'ର ସୌନ୍ଦର୍ଯ୍ୟରେ ସମସ୍ତ ସଭାସ୍ଥଳକୁ ଝଲସାଇ ଦେଇ କୁମାରଙ୍କ ହାତରୁ ପୁରସ୍କାର ଆଣିବାକୁ ଗଲା । ସେତେବେଳକୁ ସବୁ ପୁରସ୍କାର ବଣ୍ଟା ସରିଥିଲା । ସିଦ୍ଧାର୍ଥ ନିଜର ଗଳାର ସୁନାହାରଟିକୁ ଫିଟାଇ ଏହି ତରୁଣୀ ଗଳାରେ ପିନ୍ଧାଇ ଦେଲେ । ଦୁହିଁଙ୍କ ଆଖିର ମିଳନ ହେଲା ଏବଂ ଉଭୟ ଆଖିର ଚାହାଣିରେ ପରସ୍ପର ପ୍ରତି ଆକୃଷ୍ଟ ହୋଇପଡ଼ିଲେ ।

ଏହି ସୁନ୍ଦରୀ ତରୁଣୀଙ୍କର ନାମ ଯଶୋଧାରା । ତାଙ୍କର ପିତା ସୁପ୍ରବୁଦ୍ଧ ଶାକ୍ୟମାନଙ୍କର ଆତ୍ମୀୟ କୋଲିୟ ରାଜବଂଶର ଏକ ସମ୍ଭ୍ରାନ୍ତ ବ୍ୟକ୍ତି । ରାଜା ଶୁଦ୍ଧୋଦନ କାଳ ବିଳମ୍ବ ନକରି ସୁପ୍ରବୁଦ୍ଧଙ୍କୁ ନିଜର ପୁଅର ବିବାହ ପ୍ରସ୍ତାବ ଦେଲେ । ସୁପ୍ରବୁଦ୍ଧ କହିଲେ, "ସିଦ୍ଧାର୍ଥଙ୍କ ପରି ରାଜକୁମାର ସହିତ ମୋର

ଜନ୍ୟାର ବିବାହରେ ମୁଁ ସବୁଠାରୁ ଖୁସି ହେବି, ମାତ୍ର ଆମ ବଂଶର ପ୍ରଥା ହେଉଛି, କନ୍ୟାର ପ୍ରଣୟ ପ୍ରାର୍ଥୀମାନଙ୍କ ମଧ୍ୟରେ ସବୁଠାରୁ ଯେ ସାହସୀ ଓ ଯୋଦ୍ଧାରୂପେ ନିଜକୁ ପ୍ରମାଣିତ କରିବ, ସେହି କେବଳ ତା'ର ପାଣି ଗ୍ରହଣ କରିବ।"

ଏଥିପାଇଁ ଯଶୋଧାରାଙ୍କର ଏକ ସ୍ୱୟମ୍ବରର ଆୟୋଜନ ହେଲା। ଶାକ୍ୟ ରାଜ୍ୟର ବହୁ ବହୁ ଯୁବକମାନେ ଏଥିରେ ଯୋଗ ଦେଲେ। ସିଦ୍ଧାର୍ଥ ମଧ୍ୟ ତାଙ୍କର ଘୋଡ଼ା କନ୍ଥକରେ ଚଢ଼ି ଆସିଲେ। ପିଲାଦିନୁ ବିଳାସ ବ୍ୟସନରେ ବଢ଼ିଥିବା ରାଜକୁମାର ତାଙ୍କର ପ୍ରତିଦ୍ୱନ୍ଦ୍ୱୀମାନଙ୍କ ନିକଟରେ ଠିଆ ହୋଇ ପାରିବେ ବୋଲି କେହି କଳ୍ପନା କରିପାରିଲେ ନାହିଁ। ଯଶୋଧାରା ତାଙ୍କର ପରିଚାରିକାମାନଙ୍କ ସହିତ ପରଦାର ଅନ୍ତରାଳରେ ଏ ପ୍ରତିଯୋଗିତା ଦେଖିବା ପାଇଁ ବସିଥିଲେ। ପ୍ରତିଯୋଗିତା ମଧ୍ୟରେ ଘୋଡ଼ାଦୌଡ଼, ମଲ୍ଲଯୁଦ୍ଧ, ଖଣ୍ଡାର ଖେଳ ଓ ତୀରମାରିବା ପ୍ରତିଯୋଗିତା ହେଲା।

ଏ ପ୍ରତିଯୋଗିତାରେ ଶେଷକୁ କେବଳ ଦୁଇଜଣ ରହିଲେ। ସିଦ୍ଧାର୍ଥ ଓ ଦେବଦତ୍ତ। ଉଭୟଙ୍କ ମଧ୍ୟରେ ପୁଣି ଲକ୍ଷ୍ୟ ଭେଦ ଓ ଖଣ୍ଡା ଯୁଦ୍ଧର ପ୍ରତିଯୋଗିତା ହେଲା। ଦେବଦତ୍ତ ବିଶାଳକାୟ। ସେ ସିଦ୍ଧାର୍ଥଙ୍କୁ ଅକ୍ଳେଶରେ ହରାଇ ଦେଇ ପାରିବ ବୋଲି ମନେ କରି ତାଙ୍କ ସହିତ ଖଣ୍ଡାଯୁଦ୍ଧରେ ପ୍ରବୃତ୍ତ ହେଲା, ମାତ୍ର ଶେଷକୁ ଦେବଦତ୍ତର ଖଣ୍ଡା ଦୁଇଖଣ୍ଡ ହୋଇ ତଳେ ପଡ଼ିଗଲା ଏବଂ ସିଦ୍ଧାର୍ଥ ବିଜୟୀ ବୋଲି ଘୋଷିତ ହେଲେ।

ମାତ୍ର ଏତିକରେ ସନ୍ତୁଷ୍ଟ ନ ହୋଇ ଦେବଦତ୍ତ ସିଦ୍ଧାର୍ଥଙ୍କୁ ପୁଣି ଘୋଡ଼ା ଦୌଡ଼କୁ ଆହ୍ୱାନ କଲା। ଏ ଦୌଡ଼ରେ ଜଣାଗଲା, ଦେବଦତ୍ତ ସିଦ୍ଧାର୍ଥଙ୍କୁ ହଟାଇ ଅକ୍ଳେଶରେ ଆଗକୁ ଚାଲିଯିବ। ଦେବଦତ୍ତ ଚଢ଼ିଥିବା ଘୋଡ଼ା ଓ ସିଦ୍ଧାର୍ଥଙ୍କର ଧଳା ଘୋଡ଼ା କନ୍ଥକ ପରସ୍ପର ସହିତ ସମାନ୍ତରାଳ ଭାବରେ ବହୁ ସମୟ ଚାଲିଲେ। ଶେଷକୁ କନ୍ଥକ ଖୁବ୍ ଜୋରରେ ଝାମ୍ପ

ଦେଇ ପବନବେଗରେ ଦେବଦତ୍ତର ଘୋଡାକୁ ପଛରେ ପକାଇ ଚାଲିଗଲ । ଦର୍ଶକମାନେ ଆନନ୍ଦଧ୍ୱନି କଲେ ଏବଂ ସିଦ୍ଧାର୍ଥ ଏ ପ୍ରତିଯୋଗିତାରେ ବିଜୟୀ ଘୋଷିତ କଲେ ।

ପ୍ରତିଯୋଗିତା ସମୟରେ ଯଶୋଧାରା ତାଙ୍କର ପ୍ରିୟତମ ସିଦ୍ଧାର୍ଥ ସମ୍ପର୍କରେ ଶଙ୍କିତ ହୋଇ ପଡୁଥିଲେ । ଏ ବିଜୟରେ ତାଙ୍କର ଆନନ୍ଦର ସୀମା ରହିଲ ନାହିଁ । ସେ ପରିଚାରିକାଙ୍କ ଗହଣରେ ରଙ୍ଗସ୍ଥଳୀ ମଧ୍ୟକୁ ଆସି ସିଦ୍ଧାର୍ଥଙ୍କର ଗଳାରେ ବରମାଳା ଲମ୍ବାଇ ଦେଲେ । ସମସ୍ତ ଦର୍ଶକମାନେ ସିଦ୍ଧାର୍ଥ ଓ ଯଶୋଧାରାଙ୍କ ଜୟଧ୍ୱନି କଲେ ।



# ମାୟାପୁରୀର ମୋହ

ଯଶୋଧାରାଙ୍କ ସହିତ ସିଦ୍ଧାର୍ଥଙ୍କର ବିବାହ ମହା ସମାରୋହରେ ପାଳିତ ହେଲା । ବହୁକାଳ ଧରି ରାଜପ୍ରାସାଦରେ ଆନନ୍ଦ ଉତ୍ସବ ଲାଗି ରହିଲା । ଯଶୋଧାରା ଯେପରି ରୂପବତୀ ସେହିପରି ଗୁଣବତୀ, ଥିଲେ ଏବଂ ସବୁବେଳେ ସିଦ୍ଧାର୍ଥଙ୍କ ପାଖେ ପାଖେ ରହି ତାଙ୍କର ମନ ଓ ହୃଦୟକୁ ଜିଣିନେବା ପାଇଁ ଲାଗିପଡ଼ିଲେ ।

ରାଜପ୍ରାସାଦରେ ଅନ୍ୟାନ୍ୟ ବିଳାସ ଉପକରଣର ଅଭାବ ନ ଥିଲା । ସଙ୍ଗୀତର ମୂର୍ଚ୍ଛନା ଓ ନର୍ତ୍ତକୀଙ୍କ ନୂପୁରର ଧ୍ୱନିରେ ସିଦ୍ଧାର୍ଥଙ୍କ ପ୍ରାସାଦ ସର୍ବଦା ମୁଖରିତ ଥିଲା । ଏହିପରି କବିବର୍ଣ୍ଣନା ଅଛି—ସିଦ୍ଧାର୍ଥଙ୍କୁ ବାର୍ଦ୍ଧକ୍ୟ, ରୋଗ, ମୃତ୍ୟୁ ବା ଦୁଃଖ ନ ଦେଖାଇବାପାଇଁ ରାଜା ଶୁଦ୍ଧୋଦନ ଏତେ ଯତ୍ନ ନେଇଥିଲେ ଯେ ତରୁଣ ତରୁଣୀଙ୍କ ଛଡ଼ା ସିଦ୍ଧାର୍ଥଙ୍କ ପ୍ରାସାଦରେ କେହି ପ୍ରବେଶ କରି ପାରୁ ନ ଥିଲେ । ବୈରାଗ୍ୟ ବା ଦୁଃଖର ଗୀତ କେହି ବୋଲି ପାରୁ ନ ଥିଲେ । ଯୌବନର ଉଚ୍ଛଳ ନୃତ୍ୟ ଓ ପ୍ରେମର ସଙ୍ଗୀତ ସବୁବେଳେ ଶୁଣା ଯାଉଥିଲା । ଏପରିକି ପ୍ରାସାଦର ପ୍ରମୋଦ ଉଦ୍ୟାନରେ ମଉଳା ଫୁଲ ଓ ମଳା ପତ୍ର ଯେପରି ଗଛରେ ନ ରହେ, ସେଥିପାଇଁ ଜଗୁଆଳମାନେ ରହିଥିଲେ । ରାଜା ଶୁଦ୍ଧୋଦନ ବାସ୍ତବ ଜଗତରୁ ସିଦ୍ଧାର୍ଥଙ୍କୁ ଦୂରରେ ରଖିବାପାଇଁ ଯୌବନର ମଦିରାରେ ଯେପରି ଏକ ମାୟାପୁରୀ ରଚନା କରିଥିଲେ ।

ସିଦ୍ଧାର୍ଥ ତାଙ୍କର ଚାରିପାଖରେ ସୁନ୍ଦର, ଉପଯୋଗୀ ଜିନିଷମାନଙ୍କୁ ଦେଖି କିଛିକାଳ ଭୁଲିଗଲେ । ମାତ୍ର ଏ କୃତ୍ରିମ ବାତାବରଣ କେତେକାଳ ବା ସୁଖ ଲାଗିବ ? ତାଙ୍କୁ ଏ ପ୍ରାସାଦ ଏକ କାରାଗାର ପରି ବୋଧହେଲା । ବାହାର ଦୁନିଆରେ କ'ଣ ହେଉଛି, ଦେଖିବା ପାଇଁ ତାଙ୍କର ମନ ବ୍ୟାକୁଳ ହୋଇ ଉଠିଲା । ସେ ତାଙ୍କର ବିଶ୍ୱସ୍ତ ଅନୁଚର ଛନ୍ଦକଙ୍କୁ ଡାକି କହିଲେ, "ଛନ୍ଦକ, ମୁଁ କାଲି ପ୍ରାସାଦ ବାହାରକୁ ଯିବି ଏବଂ କପିଳବାସ୍ତୁ ନଗରୀ ପରିଭ୍ରମଣ କରିବି । ତୁମେ ମୋର ରଥକୁ ସଜ କର ।"

ରାଜା ଶୁଦ୍ଧୋଦନ ଏହା ଶୁଣିପାରି ଚକିତ ହୋଇ ପଡ଼ିଲେ, ମାତ୍ର ସେ ମନେ ମନେ ଭାବିଲେ ଯେ, ତାଙ୍କର ପୁତ୍ର ପ୍ରାସାଦ ଭିତରେ ସବୁବେଳେ ଆବଦ୍ଧ ରହିଲେ କେବେ ଚକ୍ରବର୍ତ୍ତୀ ରାଜା ହେବାର ଅଭିଳାଷ ତା'ର ହେବ ନାହିଁ । ଅତଏବ ବାହାରର ବନ୍ଧନରେ ଛନ୍ଦା ହେବା ପରେ ଆଉ ବୈରାଗ୍ୟର ଭାବ ତା'ର ଆସିବା ସହଜ ନୁହେଁ । କେଣୁ ନଗର ପରିଭ୍ରମଣ କରିବାପାଇଁ ତା'ର ଇଚ୍ଛାରେ ବାଧା ଦେବା ଠିକ ହେବନାହିଁ । ମାତ୍ର ସମସ୍ତ ସତର୍କତାମୂଳକ ବ୍ୟବସ୍ଥା ଗ୍ରହଣ କରିବାକୁ ହେବ ।

ରାଜାଙ୍କର ଆଦେଶରେ କପିଳବାସ୍ତୁର ଯେଉଁ ରାଜପଥରେ ସିଦ୍ଧାର୍ଥ ଯିବେ, ତାହା ପରିଷ୍କାର ପରିଚ୍ଛନ୍ନ ରଖାଗଲା । ଭିନ୍ନ ଭିନ୍ନ ସ୍ଥାନରେ ତୋରଣମାନ କରାଯାଇ ସାଜସଜ୍ଜା ହେଲା । ରାସ୍ତାର ପାଖରେ ଯେପରି ଭିକ୍ଷୁକ, ବୃଦ୍ଧ, ବିକଳାଙ୍ଗ, ରୁଗ୍‌ଣ ଲୋକମାନେ ନ ରହନ୍ତି, ସେଥିପାଇଁ କଡ଼ା ଆଦେଶ ଜାରି ହେଲା ।

ସିଦ୍ଧାର୍ଥ ଏକ ସୁସଜ୍ଜିତ ରଥରେ ନଗର ଭ୍ରମଣରେ ବାହାରିଲେ । କୁମାରଙ୍କୁ ଦେଖିବାପାଇଁ କପିଳବାସ୍ତୁ ନଗରୀର ଲୋକମାନେ ହୃଷ୍ଟବଦନରେ ପୋଷାକ ପିନ୍ଧି ରାସ୍ତାର ଦୁଇ କଡ଼ରେ ହଜାର ହଜାର ସଂଖ୍ୟାରେ ଠିଆ ହୋଇଥିଲେ । ଉତ୍ସବର ବାଦ୍ୟ ବାଜିଥିଲା । ସିଦ୍ଧାର୍ଥ ତାଙ୍କର ଧଳାଘୋଡ଼ା ଯୋଚା ହୋଇଥିବା ସୁନ୍ଦର ରଥରେ ବସି ଚାଲିଗଲାବେଳେ ରାଜପଥର ଦୁଇଧାରରେ ଠିଆ

ହୋଇଥିବା ନଗରବାସୀ ନରନାରୀ ଆନନ୍ଦରେ ଜୟଧ୍ୱନି କରିବାକୁ ଲାଗିଲେ । ରାଜପ୍ରାସାଦ ପରେ ବାହାରର ସଂସାର ମଧ୍ୟ ଏପରି ସୁନ୍ଦର ଓ ଉତ୍ସବମୟ ବୋଲି ସିଦ୍ଧାର୍ଥଙ୍କର ଧାରଣା ନ ଥିଲା । ସେ ନାଗରିକମାନଙ୍କର ଏ ଅଭ୍ୟର୍ଥନା ଉପଭୋଗ କରି କରି ଚାଲିଲେ ।

ଏହି ସମୟରେ ହଠାତ୍ ଜଣେ ବୁଢ଼ା ଖଣ୍ଡେ ବାଡ଼ି ଠୁକୁର ଠୁକୁର କରି ରାସ୍ତାର ଏ କଡ଼ରୁ ବାହାରି ସେ କଡ଼କୁ ଚାଲିଗଲା । ବୟସର ଭାରରେ ସେ ଦବି ପଡ଼ିଛି । ଦେହରେ ତେଜ ନାହିଁ । ମୁହଁ ବିବର୍ଣ୍ଣ । ଆଖି କୋରଡ଼ରେ ପଶିଯାଇ ଭଲ ଦେଖା ଯାଉଛି । ଦାନ୍ତ ପଡ଼ି ପାଟି ପାକୁଆ ହୋଇଗଲାଣି । ଚମ ଓହଳି ମାଂସ ଧୁକୁ ଧୁକୁ ହେଉଛି । ମୁଣ୍ଡବାଳ ପାଚିଯାଇ ଧୋବ ଫର ଦେଖା-ଯାଉଛି । ଏତେ ଦୁର୍ବଳ ଯେ, ବାଡ଼ି ଖଣ୍ଡେ ଆଶ୍ରୟ କରି ଚାଲିବା ମଧ୍ୟ କଷ୍ଟ । ମଣିଷ ବେଶରେ ହାଡ଼, କଙ୍କାଳ ଓ ଚମର ଏପରି ଗୋଟିଏ ପିଣ୍ଡୁଳା ସିଦ୍ଧାର୍ଥ କେବେ ଦେଖି ନ ଥିଲେ ।

ସେ ତାଙ୍କର ରଥର ବାହକ ଛନ୍ଦକକୁ ପଚାରିଲେ, "ଛନ୍ଦକ, ମୁଁ ଏ କ'ଣ ଦେଖୁଛି ? ଏ କିଏ ? ଏପରି ମନୁଷ୍ୟ ପୁଣି ଦେଖାଯାନ୍ତି ?"

ଛନ୍ଦକ କହିଲା, "ହଁ, କୁମାର, ଏପରି ମନୁଷ୍ୟ ଦେଖାଯାନ୍ତି । ବୁଢ଼ା ହେଲେ ଯୁବକ ଶରୀରର ଶୋଭା ଏହିପରି ଲୁଚିଯାଏ ।"

ଗୌତମ ପଚାରିଲେ, "କ'ଣ ସମସ୍ତେ ଏହିପରି ବୁଢ଼ା ହୁଅନ୍ତି ? ମୋତେ ବି ଦିନେ କ'ଣ ଏହିପରି ହେବାକୁ ପଡ଼ିବ ?"

ଛନ୍ଦକ ଉତ୍ତର ଦେଲା, "ହଁ କୁମାର, ସମସ୍ତେ ଦିନେ ନା ଦିନେ ଏହିପରି ବୁଢ଼ା ହୁଅନ୍ତି ।"

ଯୌବନର ଉନ୍ମାଦନା ଓ ଉତ୍ସବର କୋଳାହଳ ମଧ୍ୟରେ ଏପରି ମଧ୍ୟ ଦୃଶ୍ୟ ପୁଣି ଦେଖିବାକୁ ମିଳେ ବୋଲି ସିଦ୍ଧାର୍ଥଙ୍କର କେବେ ଧାରଣା ନ ଥିଲା । ତାଙ୍କର ଏ ସୁନ୍ଦର ଦେହ ଦିନେ ଏହିପରି ହେବ, ସୁନ୍ଦରୀ ଯଶୋ-

ଧାରୀଙ୍କୁ ଯଦି ଏହି ଦଶା ଦେଖିବାକୁ ପଡ଼ିବ ଏବଂ ସେ ତାଙ୍କର ସ୍ୱନ୍ଧଆଡ଼େ ଯେଉଁ ଯୌବନର ଛବି ଦେଖୁଛନ୍ତି, ସେ ଯଦି ଏହିପରି ଲୁଚିଯିବ, ଏହା ଖବ ସ୍ୱବ ସିଦ୍ଧାର୍ଥଙ୍କ ମନ ଦୁଃଖରେ ଅଭିଭୂତ ହୋଇପଡ଼ିଲା । ତାଙ୍କର ସେ ଦିନ ଆଉ ଆଗକୁ ଯିବା ପାଇଁ ଇଚ୍ଛା ହେଲା ନାହିଁ । ରଥ ଫେରାଇ ନେବାପାଇଁ ସେ ଛନ୍ଦକଙ୍କୁ ଆଦେଶ ଦେଲେ ।

ରାଜପ୍ରାସାଦକୁ ଫେରିଯାଇ ଆଉ ଉତ୍ସବ ଓ ଆମୋଦ ପ୍ରମୋଦରେ ତାଙ୍କର ମନ ଲାଗିଲା ନାହିଁ । ସେ ବିମର୍ଷ ଓ ଚିନ୍ତିତ ଦେଖାଗଲେ । ସିଦ୍ଧାର୍ଥଙ୍କର ଏ ଅବସ୍ଥା ଦେଖି ଯଶୋଧାରା ଓ ତାଙ୍କର ପରିଚାରିକାମାନେ ଚିନ୍ତିତ ହୋଇ-ପଡ଼ିଲେ ।

ରାଜା ଶୁଦ୍ଧୋଦନଙ୍କ ପାଖକୁ ଖବର ଗଲା । ସେ ଚିନ୍ତିତ ହୋଇ ରାଜ କର୍ମଚାରୀମାନଙ୍କୁ ଗାଳି ଦେବାକୁ ଲାଗିଲେ । ସିଦ୍ଧାର୍ଥ ରାସ୍ତାରେ ବୁଢ଼ା ଲୋକକୁ କିଏ ଛାଡ଼ିଲା ବୋଲି ସେ ଛନ୍ଦକଙ୍କୁ ପଚାରିଲେ । ଛନ୍ଦକ ଉତ୍ତର ଦେଲା, "ମହାରାଜ, ଏ ବିଧାତାର ଲେଖନ । କୁଆଡ଼େ ଥିଲା, ହଠାତ୍ ଏ ବୁଢ଼ା ଲୋକଟି ବାହାରି ଆସିଲା, ମୁଁ କହି ପାରିବି ନାହିଁ । ବୋଧହୁଏ, ଦେବତାମାନଙ୍କର ଇଚ୍ଛା ଯେ, କୁମାର ଏହିପରି ଜଣେ ଲୋକକୁ ଦେଖିବେ ।"

ରାଜା ମନେ ମନେ ପ୍ରତିଜ୍ଞା କଲେ, ଆଉ ଏପରି ଦୃଶ୍ୟ ସେ ପୁଅକୁ ଦେଖିବାକୁ ଦେବେ ନାହିଁ । ପ୍ରାସାଦର ଦରଜାରେ ଅଧିକ କଡ଼ା ପହରା ରଖାଗଲା ଏବଂ ସିଦ୍ଧାର୍ଥଙ୍କ ବାସଭବନରେ ତାଙ୍କର ମନ ଭୁଲାଇ ନେବା ପାଇଁ ନୂଆ ନୂଆ ନୃତ୍ୟ, ସଙ୍ଗୀତ, ଆମୋଦର ଆୟୋଜନ କରାଗଲା ।

କିଛି ଦିନ ପରେ ପୁଣି ପ୍ରାସାଦ ବାହାରକୁ ବୁଲିଯିବା ପାଇଁ ସିଦ୍ଧାର୍ଥଙ୍କର ଇଚ୍ଛା ହେଲା ଓ ସେ ଛନ୍ଦକଙ୍କୁ ରଥ ସଜ କରିବା ପାଇଁ ଆଦେଶ ଦେଲେ । ଶୁଦ୍ଧୋଦନ ପୁଅର ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବାକୁ ଭୟ କରି ଅନୁମତି ଦେଲେ । ପୂର୍ବଥର ଅପେକ୍ଷା ଏଥର ଅଧିକ ସତର୍କତାମୂଳକ ବ୍ୟବସ୍ଥା କରାଗଲା ଏବଂ ସବୁ ରୋଗୀ, ବୁଢ଼ା ଓ ବିକଳାଙ୍ଗ ଲୋକଙ୍କୁ ରାସ୍ତାକୁ ନ ବାହାରିବା ପାଇଁ ନିର୍ଦ୍ଦେଶ ଦିଆଗଲା ।

ସିଦ୍ଧାର୍ଥ ରଥରେ ବସି ଆସିଲାବେଳେ ରାଜପଥର ଦୁଇଧାରରେ ଠିଆ ହୋଇଥିବା ନାଗରିକମାନେ ସ୍ୱତଃସ୍ଫୂର୍ତ୍ତ ଆନନ୍ଦଧ୍ୱନି କଲେ । କଣାଗଲା, ଏଥର ଅନ୍ତତଃ ରାଜକୁମାରଙ୍କୁ କୌଣସି ଅଶୁଭ ଦର୍ଶନ ଦେଖିବାକୁ ମିଳିବ ନାହିଁ । ମାତ୍ର ରଥ ଅଳ୍ପଦୂର ଯାଇଛି କି ନାହିଁ, ହଠାତ୍ ସିଦ୍ଧାର୍ଥଙ୍କୁ ଏକ କରୁଣ ଦୃଶ୍ୟ ଦେଖିବାକୁ ହେଲା । ରାସ୍ତାର ଗୋଟିଏ କଡ଼ରେ ଜଣେ ଲୋକ ପଡ଼ି ଅଛନ୍ତି । ତା'ର ଗୋଡ, ହାତ, ମୁହଁ ଫୁଲି ଯାଇଛି । ସମଗ୍ର ଶରୀର ବିବର୍ଣ୍ଣ ଓ କଙ୍କାଳସାର ଦେଖା ଯାଉଛି ଏବଂ ସେ କଷ୍ଟରେ ଚିତ୍କାର କରୁଛି । ସିଦ୍ଧାର୍ଥ ଛନ୍ଦକଙ୍କୁ ଏ କିଏ ଏବଂ କାହିଁକି ଏପରି ହେଉଛି ବୋଲି ପଚାରିଲେ । ଛନ୍ଦକ ଉତ୍ତର ଦେଲା, "କୁମାର, ଏ ରୁଗ୍ଣ ଲୋକ । କଷ୍ଟଦାୟକ ରୋଗ ଭୋଗ କରି ଏହାର ଶରୀରର ଶୀର୍ଣ୍ଣ ହୋଇ ଯାଇଛି । ଦେହରେ ରକ୍ତ ନାହିଁ ଏବଂ ସେ ଅସହାୟ ଭାବରେ ଚିତ୍କାର କରୁଛି ।" ସିଦ୍ଧାର୍ଥ ପଚାରିଲେ, "ସମସ୍ତଙ୍କ ଶରୀରରେ କ'ଣ ଏହିପରି ରୋଗ ଅଛି ?" ଛନ୍ଦକ ଉତ୍ତର ଦେଲା, "ହଁ, କୁମାର, ଦେହ ମାତ୍ରେ ରୋଗ । ରୋଗରୁ କେହି ମୁକ୍ତ ନୁହେଁ ।" ଆଉ ଆଗକୁ ନ ଯାଇ ସିଦ୍ଧାର୍ଥ ସେଇଠାରୁ ରଥ ଫେରାଇ ନେବାପାଇଁ ଛନ୍ଦକଙ୍କୁ ଆଦେଶ ଦେଲେ ।

ପ୍ରାସାଦରେ ପହଞ୍ଚି ସିଦ୍ଧାର୍ଥଙ୍କ ମନ ପୁଣି ଚିନ୍ତାମଗ୍ନ ହୋଇପଡ଼ିଲା । ଏତେ ସୁନ୍ଦର ଦେହ ଏବଂ ଯୌବନ ଦିନେ ଜରା ଓ ରୋଗରେ ହତଶ୍ରୀ ଓ ବିବର୍ଣ୍ଣ ହୋଇପଡ଼େ । ତଥାପି ମନୁଷ୍ୟର ଏ ଦେହ ପ୍ରତି କେତେ କାମନା ଓ ଅନୁରକ୍ତି !

ରାଜା ଶୁଦ୍ଧୋଦନ ସିଦ୍ଧାର୍ଥଙ୍କର ଦ୍ୱିତୀୟବାର ନଗର ଭ୍ରମଣ ବୃତ୍ତାନ୍ତ ପାଇ ବ୍ୟସ୍ତ ହୋଇପଡ଼ିଲେ । ପୁଣି ଅଧିକ ପ୍ରହରୀ ନିଯୁକ୍ତ କରାଗଲା ଏବଂ ତାଙ୍କୁ ପ୍ରାସାଦ ମଧ୍ୟରେ ଅଧିକ ଆକୃଷ୍ଟ କରି ରଖିବାର ଚେଷ୍ଟା ହେଲା ।

ମାତ୍ର ଦିନେ ସିଦ୍ଧାର୍ଥ ପୁଣି ନଗର ଭ୍ରମଣରେ ବାହାରିବା ପାଇଁ ଜିଦ୍ ଧରିଲେ ଏବଂ ଏଥର ମଧ୍ୟ ରାଜା ଶୁଦ୍ଧୋଦନ ପୁତ୍ରର ଅନୁରୋଧ ଏଡ଼ି ପାରିଲେ ନାହିଁ । ରଥ ସଜ୍ଜିତ ହେଲା । ମଙ୍ଗଳ ଘଟ ରଖାଗଲା । ରାଜାଙ୍କର

ରକ୍ଷକମାନେ ଶବ୍ଦାର ଦୁଇକଡ଼ ଜଗି ରହିଲେ । ମାତ୍ର ସିଦ୍ଧାର୍ଥ ଅଳ୍ପଦୂର ଯାଇଛନ୍ତି କି ନାହିଁ, ହଠାତ୍ କନ୍ଦନଧ୍ୱନି ଶୁଣି ପାରିଲେ । ଚାରି ଲୋକ ବିମାନରେ ଗୋଟିଏ ଲୋକକୁ ଶୁଆଇ ତାକୁ କାନ୍ଧରେ ଧରି କାନ୍ଦ କାନ୍ଦ ଯାଉଛନ୍ତି । ଯେଉଁ ଲୋକଟି ଶୋଇଚି, ତା'ର ଆଖିରେ ପଲକ ନାହିଁ । ହାତ ଗୋଡ କାଠ ପରି ପଡ଼ି ରହିଛି । ସେ ହଲଚଲ ହେଉ ନାହିଁ ।

ସିଦ୍ଧାର୍ଥ ଛନ୍ଦକକୁ ପଚାରିଲେ, "ଏ ଲୋକଟି କିଏ, କାହିଁକି ଏମାନେ କାନ୍ଦ କାନ୍ଦ ଯାଉଛନ୍ତି ?"

ଛନ୍ଦକ ଉତ୍ତର ଦେଲା, "କୁମାର, ଏମାନେ ଶବକୁ ନେଇ ଯାଉଛନ୍ତି । ପ୍ରାଣବାୟୁ ଛାଡ଼ିଗଲେ ଦେହର ଏହିପରି ଅବସ୍ଥା ହୋଇଯାଏ । ଆତ୍ମୀୟମାନେ ଆଖିରୁ ଲୁହ ଢାଳନ୍ତି ଏବଂ ଏ ମୃତଦେହକୁ ନେଇ ଶ୍ମଶାନରେ ପୋଡ଼ି ଦିଅନ୍ତି ।"

ସିଦ୍ଧାର୍ଥ ପଚାରିଲେ, "କ'ଣ ସମସ୍ତଙ୍କର ଏହି ଅବସ୍ଥା ହୁଏ ?"

ଛନ୍ଦକ ଉତ୍ତର ଦେଲା, "ହଁ, କୁମାର, ସମସ୍ତଙ୍କୁ ଦିନେ ମରିବାକୁ ହୁଏ । ଦେହର ପରିଣାମ ମୃତ୍ୟୁ ।"

ସିଦ୍ଧାର୍ଥ ସେଇଠାରୁ ମନ ଦୁଃଖରେ ଫେରିଗଲେ । ରାଜପ୍ରାସାଦର ବିଳାସ ତାଙ୍କୁ ଆଉ ସୁଖ ଲାଗିଲା ନାହିଁ .ସୁନ୍ଦରୀ ନର୍ତ୍ତକୀମାନଙ୍କର ରୂପ ଦେଖିଲେ ସେହି ବୁଢ଼ା, ରୋଗୀ ଓ ମୃତ ବ୍ୟକ୍ତିର ଦୃଶ୍ୟ ତାଙ୍କର ମନେ ପଡ଼ିଲା । ଯେତେ ସୁନ୍ଦର ଦେହ ହେଲେ ମଧ୍ୟ ଦିନେ ନା ଦିନେ ତାକୁ ଏପରି ବିକୃତି, ବିକଳାଙ୍ଗ, ନିର୍ଜୀବ ହେବାକୁ ହୁଏ । ତେଣୁ ଏ ଦେହର ପୂଜା, ଏ ଦେହର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ରହିବାରେ ଲାଭ ନାହିଁ ।

ରାଜା ଶୁଦ୍ଧୋଦନଙ୍କର ମନ ଶଙ୍କିତ ହୋଇଉଠିଲା । ଯେତେ ଚେଷ୍ଟା କଲେ ମଧ୍ୟ ଜରା, ରୋଗ ଓ ମୃତ୍ୟୁର ଦୃଶ୍ୟଠାରୁ ପୁତ୍ରକୁ ସେ ଅଲଗା କରି ପାରିଲେ ନାହିଁ । ତଥାପି ତାଙ୍କର ପିପାସା ରହିଥାଏ, ପୁତ୍ର ଚକ୍ରବର୍ତ୍ତୀ ରାଜା ହେବ ।

ଯେତକ ଧନ ଗତ ଯାଉଥାଏ, ସିଦ୍ଧାର୍ଥ ସେତକ ଚନ୍ତାକୁଳ ହୋଇ ପଡୁଥାନ୍ତି । ସଂସାର କେବଳ ଜରା, ରୋଗ ଓ ମୃତ୍ୟୁର ଦୁଃଖରେ ଜର୍ଜର, ତେଣୁ ଏ ସଂସାରରେ ସୁଖ ବୋଲି ଯାହା ବୁଝାଯାଏ, ସେଥିରେ ବୁଡ଼ି ରହିବା ନିର୍ବୋଧତାର କାର୍ଯ୍ୟ ।

ଏପରି ଅବସ୍ଥାରେ ଥରେ ସିଦ୍ଧାର୍ଥଙ୍କର ପୁଣି ବାହାରକୁ ବୁଲିଯିବା ପାଇଁ ଇଚ୍ଛା ହେଲା । ପୁଣି ରାଜା ଶୁଦ୍ଧୋଦନ ପୁତ୍ରକୁ ସନ୍ତୁଷ୍ଟ କରି ରଖିବାର କୌଣସି ଉପାୟ ନ ଦେଖି ଅନୁମତି ଦେଲେ । ଏଥର ନଗରବାସୀଙ୍କୁ ସିଦ୍ଧାର୍ଥଙ୍କ ଖବର ଗୋପନ ରଖାଯାଇଥିଲା । ପ୍ରାସାଦ ଦ୍ୱାରର ଅଳ୍ପ ଦୂରରେ ଗେରୁଆ ବସ୍ତ୍ର ଓ ଭିକ୍ଷାର ପାତ୍ର ଧାରଣ କରି ଜଣେ କେହି ବ୍ୟକ୍ତି ତାଙ୍କ ଆଡ଼କୁ ଆସୁଥିବାର ସେ ଦେଖି ପାରିଲେ । ଏ କିଏ ବୋଲି ପଚାରିବାରୁ ଛନ୍ଦକ ଉତ୍ତର ଦେଲା, "କୁମାର, ଏ ଜଣେ ସନ୍ନ୍ୟାସୀ, ଏ ସଂସାର ତ୍ୟାଗ କରିଛନ୍ତି ।" ସିଦ୍ଧାର୍ଥ ସନ୍ନ୍ୟାସୀଙ୍କୁ ଅଭିବାଦନ କରି ସେ କିଏ ବୋଲି ପଚାରିଲେ ।

ସନ୍ନ୍ୟାସୀ କହିଲେ, "ମୁଁ ସଂସାରର ସମସ୍ତ କ୍ଲେଶ, ବାସନା ଛାଡ଼ି ଭିକ୍ଷାର ପାତ୍ର ଧାରଣ କରିଛି । ମୁଁ ଦେଖିଲି ଯେ ଏ ସଂସାରରେ ଯାହାକୁ ସୁଖ ବୋଲି ଲୋକ ଆମେ ମଣୁଁଥାଉ, ତାହା ପ୍ରକୃତ ସୁଖ ନୁହେଁ । ଏ ସୁଖ କ୍ଷଣସ୍ଥାୟୀ । ଯେଉଁ ସୁଖ ଏ ପରିବର୍ତ୍ତନଶୀଳ ସଂସାରର ପ୍ରକୃତିରେ ମିଳେ ନାହିଁ, ମୁଁ ସେହି ଚିରସ୍ଥାୟୀ ସୁଖର ସନ୍ଧାନପାଇଁ ଘରଛାଡ଼ି ବାହାରିଲି । ସେଥିପାଇଁ ନିର୍ଜନ ସ୍ଥାନ ମୋର ବାସସ୍ଥଳୀ ।"

ଗୌତମ ଏ ଲୋକର ଜୀବନ ପ୍ରତି ଅନୁରକ୍ତ ହୋଇ ପଡ଼ିଲେ । ଏହି ବାଟରେ କେବଳ ସଂସାରର ଦୁଃଖରୁ ମୁକ୍ତ ମିଳିପାରେ ବୋଲି ତାଙ୍କର ଦୃଢ଼ ଧାରଣା ହେଲା । ସେ ମନେ ମନେ ଆଶ୍ୱସ୍ତ ହୋଇ ଘରକୁ ଫେରିଯିବା ପାଇଁ ଛନ୍ଦକକୁ ଆଦେଶ ଦେଲେ ।



# ଗୃହ ତ୍ୟାଗ ଓ ପଳାୟନ

ଏହି ଘଟଣାର ପରେ ପରେ ସିଦ୍ଧାର୍ଥଙ୍କ ମନରେ ଆଉ ଚିନ୍ତା ରହିଲା ନାହିଁ । ଜୀବନରେ କେଉଁ ବାଟ ସେ ଗ୍ରହଣ କରିବେ, ତାହା ମନସ୍ଥ କରି ନେଲେ । ସନ୍ନ୍ୟାସୀ ହିଁ ତାଙ୍କୁ ଜରା, ମୃତ୍ୟୁ ଓ ରୋଗର ସଂସାରରୁ ମୁକ୍ତିର ବାଟ ଦେଖାଇଲେ ।

ଦିନେ ସେ ନଗର ପ୍ରମୋଦ ଉଦ୍ୟାନର ପୁଷ୍କରିଣୀରେ ସ୍ନାନ କରି ମାଳା, ଚନ୍ଦନ ଓ ନାନା ସୁଗନ୍ଧ ଦ୍ରବ୍ୟରେ ଶରୀରକୁ ଭୂଷିତ କରି ଉଦ୍ୟାନରେ ଭ୍ରମଣ କରୁଥିଲେ, ଏହି ସମୟରେ ଯଶୋଧାରାଙ୍କର ଏକ ପୁତ୍ର ଜାତ ହେଲା । ଏ ସମ୍ବାଦରେ ଅତ୍ୟନ୍ତ ଆନନ୍ଦିତ ହୋଇ ରାଜା ଶୁଦ୍ଧୋଦନ ସିଦ୍ଧାର୍ଥଙ୍କ ପାଖକୁ ଖବର ପଠାଇଲେ । ସିଦ୍ଧାର୍ଥ ଭୃତ୍ୟମାନଙ୍କଠାରୁ ସମ୍ବାଦ ପାଇ ସଙ୍ଗେ ସଙ୍ଗେ କହି ଉଠିଲେ, "ପୁତ୍ର ନୁହେ, ମୋ ପାଇଁ ଏକ ଶୃଙ୍ଖଳ ଜାତ ହୋଇଛି, ତେଣୁ ତା'ର ନାମ ହେବ ରାହୁଲ ।"

ସେ ଦିନ ସିଦ୍ଧାର୍ଥ ବହୁ ଆଡମ୍ବରରେ ନଗର ପରିଭ୍ରମଣ ପାଇଁ ବାହାରିଲେ । କିଛି ସମୟ ଯିବାପରେ ଏକ ପ୍ରାସାଦ ଗବାକ୍ଷରୁ ନାରୀକଣ୍ଠରୁ ଏକ ଗୀତ ଶୁଣାଗଲା । ଏ ଗୀତ ସିଦ୍ଧାର୍ଥଙ୍କପାଇଁ ଉଦ୍ଦିଷ୍ଟ । ଗୀତର ଅର୍ଥ ହେଉଛି —ଏପରି ରୂପବାନ ପୁତ୍ରକୁ ଦେଖି ପିତାର ହୃଦୟ ଶାନ୍ତ ହେଉଥିବ, ମାତାର ହୃଦୟ ଶାନ୍ତ ହେଉଥିବ ଏବଂ ଏପରି ଯୁବକକୁ ପତିରୂପେ ଲାଭ କରି ସ୍ତ୍ରୀର ହୃଦୟ ଶାନ୍ତ ହେଉଥିବ ।" ସିଦ୍ଧାର୍ଥ ମନେ ମନେ ଭାବିଲେ, "ଏ ଦେହ ବା

ଏ ରୂପ ଯେବେ ହୃଦୟରେ ଶାନ୍ତି ଆଣେ ନାହିଁ । ଯେତେବେଳେ ଏ ଦେହରେ ରାଗ, ଦ୍ୱେଷ, ମୋହ, ଅଭିମାନର ଲୋପ ହୁଏ, ସେତେବେଳେ କେବଳ ପ୍ରକୃତ ଶାନ୍ତି ଆସି ପାରେ । ମୋତେ ଆଜ ଏ ଭଲକଥା ଶୁଣାଇଛୁ । ଆଉ ଡେର କରିବାରେ ଲାଭ ନାହିଁ । ମୁଁ ଏହି ପ୍ରକୃତ ଶାନ୍ତିର ଅନ୍ୱେଷଣରେ ବାହାରିବ ।"

ସେ ଦିନ ସିଦ୍ଧାର୍ଥ ପ୍ରାସାଦକୁ ଫେରି ଆସି କେଣ୍ଡି ରାତ୍ରଯାଏ ନ ଜାଗି ଶୋଇ ପଡିଲେ । ଯେଉଁ ନର୍ତ୍ତକୀମାନେ ନାଚୁଥିଲେ ଏବଂ ମୂଦଙ୍ଗମାନେ ବାଦ୍ୟାବାଦନ କରୁଥିଲେ, "ସେମାନେ ରାଜକୁମାର ଶୋଇ ପଡ଼ିଥିବା ଦେଖି କହିଲେ, ଯାହାଙ୍କପାଇଁ ଆମେ ଏ ପରିଶ୍ରମ କରୁଥିଲୁ, ସେ ତ ଶୋଇ ଗଲେଣି; ଆମର ମଧ୍ୟ ଆଉ ରାତ୍ର ଜାଗିବାର ପ୍ରୟୋଜନ ନାହିଁ ।" ଏହା କହି ସେମାନେ ଶୋଇ ପଡିଲେ । ପ୍ରାସାଦରେ ହକ୍କୁଳ ପ୍ରଦୀପ୍ତ ସବୁ ଜଳୁଥିଲା । କିଛି ସମୟ ପରେ ସିଦ୍ଧାର୍ଥ ନିଦରୁ ଉଠି ଦେଖିଲେ ଯେ ନିଜ ନିଜର ବାଦ୍ୟ ଯନ୍ତ୍ର ଧରି ମୂଦଙ୍ଗମାନେ ଶୋଇଯାଇଛନ୍ତି । ସୁପ୍ତ ଅବସ୍ଥାରେ ସେମାନଙ୍କର ସେ ଲୀଳା ଅଳସ ଅଙ୍ଗ ଆଉ ନାହିଁ । ମୁଣ୍ଡର ବାଳ ଓ ପିନ୍ଧିବା ଲୁଗା ଅସ୍ତବ୍ୟସ୍ତଭାବରେ ପଡ଼ିଛି । ଦେହ ଅତି ଅପରିଚ୍ଛ, ବିବର୍ଣ୍ଣ ଓ ଅସୁନ୍ଦର ଦେଖା ଯାଉଛି । ତାଙ୍କୁ ଜଣାଗଲା, ସେ ଯେପରି ଏକ ମାୟାପୁରୀରେ ରହିଛନ୍ତି । ଯେଉଁ ରୂପ ଓ ସୌନ୍ଦର୍ଯ୍ୟକୁ ସେ ଚିରନ୍ତନ ବୋଲି ମନେ କରୁଥିଲେ, ସେ ଗୋଟାଏ ଇନ୍ଦ୍ରଜାଲ । ସେ ସ୍ଥିର କଲେ, ସେହି ମୁହୂର୍ତ୍ତରେ ତାଙ୍କୁ ସେହି ପ୍ରାସାଦ ଛାଡ଼ିବାକୁ ହେବ ।

ଏହା ମନସ୍ଥ କରି ସେ ତାଙ୍କର ବିଶ୍ୱସ୍ତ ଅନୁଚର ଛନ୍ଦକକୁ ଉଠାଇ କହିଲେ, "ଛନ୍ଦକ, ମୋର ଘୋଡା ସଜକର । ମୁଁ ଏହି ମୁହୂର୍ତ୍ତରେ ରାଜ ପ୍ରାସାଦରୁ ବାହାରିଯିବି ।"

ଛନ୍ଦକକୁ ଅଶ୍ୱଶାଳାକୁ ପଠାଇ ନିଜ ସ୍ତ୍ରୀ ଓ ପୁତ୍ରକୁ ଦେଖିବାପାଇଁ ସିଦ୍ଧାର୍ଥଙ୍କର ଇଚ୍ଛା ହେଲା । ସେ ଯଶୋଧାରାଙ୍କର ଶୟନ କକ୍ଷକୁ ଯାଇ ଦେଖିଲେ, କକ୍ଷର ମଧ୍ୟ, ସ୍ଥଳରେ ସୁଗନ୍ଧ ତେଲର ଏକ ଦୀପ ଜଳୁଛି । ଶେଯ ଉପରେ

ମଲ୍ଲୀଫୁଲ ପଡ଼ିଛି । ପୁଅ ମୁଣ୍ଡ ଉପରେ ଗୋଟିଏ ହାତ ରଖି ଯଶୋଧାରା ଶୋଇପଡ଼ିଛନ୍ତି । ଦୁଆର ମୁହଁରେ ଠିଆ ହୋଇ ସିଦ୍ଧାର୍ଥଙ୍କର ଇଚ୍ଛା ହେଲା, ଯିବା ପୂର୍ବରୁ ତାଙ୍କର ଶିଶୁ ପୁଅଟିକୁ କୋଳରେ ଧରି ତାକୁ ଗୋଟିଏ ଚୁମା ଦେଇ ଯାଆନ୍ତେ ! ମାତ୍ର ପର ମୁହୂର୍ତ୍ତରେ ସେ ଭାବିଲେ, ଏପରି କଲେ ଯଶୋଧାରାଙ୍କ ନିଦ ଭାଙ୍ଗିଯିବ । ତାଙ୍କର ଯିବା ବୋଧହୁଏ ଆଉ ହେବ ନାହିଁ । ସେ ମନେ ମନେ କହିଲେ, "ଆଜି ନୁହେଁ, ମୁଁ ବୁଦ୍ଧ ହେବା ପରେ ମୋ ପୁଅକୁ ଦେଖିବା ପାଇଁ କପିଳବାସ୍ତୁ ଫେରିବି ।"

କନ୍ଥକ ଘୋଡ଼ାକୁ ସଜ କରି ଛନ୍ଦକ ଅପେକ୍ଷା କରି ରହିଥିଲା । କନ୍ଥକ ଖୁବ ଜୋର ଦୌଡ଼ି ପାରୁଥିଲା ଏବଂ ସମଗ୍ର କପିଳବାସ୍ତୁ ରାଜ୍ୟରେ ତା'ପରି ସୁନ୍ଦର, ବଳବାନ, ବିଶାଳକାୟ ଘୋଡ଼ା ନ ଥିଲା । ସିଦ୍ଧାର୍ଥ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି କନ୍ଥକର ମୁହଁକୁ ଛାତିରେ ରଖି ଗୁଣୁ ଗୁଣୁ କରି କହିଲେ, "ମୋର ପ୍ରିୟ କନ୍ଥକ ! ଆଜି ରାତି ଭିତରେ ମୁଁ ଏ ପ୍ରାସାଦ ଏବଂ ଏ ରାଜ୍ୟ ଛାଡ଼ି ଚାଲିଯିବି । ତୁ ମୋର ସହାୟକ ହେବୁ ।"

ରଜନୀ ନିଃଶବ୍ଦ ଥିଲା ଏବଂ ରାଜପ୍ରାସାଦର ପ୍ରହରୀମାନେ ଗାଢ଼ନିଦରେ ଶୋଇଥିଲେ । ଏହିପରି କଥା ବର୍ଣ୍ଣନା ଅଛି ଯେ, ଗୌତମଙ୍କ ଯିବାର ସମୟ ଜାଣି ଆକାଶରେ ଦେବତାମାନେ ଅପେକ୍ଷା କରିଥିଲେ । ଯେଉଁ କନ୍ଥକ ଘୋଡ଼ାର ପାଦର ଟାପୁ ଶବ୍ଦ ସମଗ୍ର କପିଳବାସ୍ତୁ ନଗରକୁ ଶୁଣାଯାଏ, ସେଦିନ ଦେବତାଙ୍କ ମାୟାରେ ତା'ର ପାଦ ଶବ୍ଦ ଆଦୌ ଶୁଣାଗଲା ନାହିଁ ଏବଂ ପ୍ରହରୀମାନେ ଆହୁରି ଗାଢ଼ ନିଦରେ ଶୋଇଗଲେ । ପ୍ରାସାଦର ଦରଜା ଖୋଲିଗଲା ଏବଂ କନ୍ଥକର ପିଠିରେ ବସି ଛନ୍ଦକକୁ ସଙ୍ଗରେ ଘେନି ଖୁବ ବେଗରେ ସିଦ୍ଧାର୍ଥ ବାହାରିଗଲେ । ତାଙ୍କର ପଛରେ ରାଜପ୍ରାସାଦର ସମସ୍ତ ଭୋଗ ବିଳାସ, ସୁନ୍ଦରୀ ଯଶୋଧାରା ଓ କୁମାର ରାହୁଲ; ଆଗରେ ନିର୍ଜନ ରାତି ଓ ଅନିଶ୍ଚିତ ଭବିଷ୍ୟତ ।

ଠିକ୍ ଏହି ସମୟରେ ସିଦ୍ଧାର୍ଥଙ୍କ ଜୀବନରେ ଭବିଷ୍ୟତରେ ବାରମ୍ବାର ଦେଖା ଦେଉଥିବା ମାର ବା ପ୍ରଲୋଭନକାରୀ ଶକ୍ତି ଆସି ଦେଖା ଦେଲା । ସେ

କହିଲା, "କୁମାର, ଫେରିଯାଅ । ଆଜଠାରୁ ସାତଦିନ ମଧ୍ୟରେ ତୁମ ହାତରେ ଏକ ଚକ୍ରବର୍ତ୍ତୀର ଅସ୍ତ୍ର ଆସି ପହଞ୍ଚିବ । ତୁମେ ସେ ଆୟୁଧ ସାହାଯ୍ୟରେ ସମସ୍ତ ଜମ୍ବୁଦ୍ୱୀପ ଜୟ କରି ଚକ୍ରବର୍ତ୍ତୀ ରାଜା ହେବ ।"

ସିଦ୍ଧାର୍ଥ କହିଲେ, "ମାର, ମୁଁ ସେ କଥା ଜାଣେ । ମୋର ରାଜ୍ୟରେ ଲୋଡ଼ା ନାହିଁ, ମୁଁ ବୁଦ୍ଧତ୍ୱ ଲୋଡ଼େଁ । ତୁ ମୋର ବାଟରୁ ହଟିଯା ।"

ମାତ୍ର ମାର ଏଥିରେ ସନ୍ତୁଷ୍ଟ ହେଲା ନାହିଁ । ସେ ଛାୟା ସଙ୍ଗେ ଗ୍ରସ୍ତାପର ସିଦ୍ଧାର୍ଥଙ୍କ ପଛେ ପଛେ ଲାଗି ରହିଲା ଏବଂ କୌଣସି ଏକ ଦୁର୍ବଳ ମୁହୂର୍ତ୍ତର ସୁଯୋଗ ନେବା ପାଇଁ ଅପେକ୍ଷା କଲା ।

ଏହାପରେ ବର୍ଣ୍ଣିତ ଅଛି ଯେ, ସିଦ୍ଧାର୍ଥଙ୍କ ସଂକଳ୍ପ ଶୁଣି ଦେବତାମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେ । ଧରଣୀ ପୁଲକିତ ହେଲା ଏବଂ ସମୁଦ୍ରରୁ ମେଘ ଗର୍ଜନ ପରି ଏକ ନିନାଦ ଶୁଣାଗଲା ।

ସିଦ୍ଧାର୍ଥ ଆଷାଢ଼ ପୂର୍ଣ୍ଣିମାର ରାତିରେ ଗୃହତ୍ୟାଗ କଲେ । ତାଙ୍କର ଏହି ଗୃହତ୍ୟାଗକୁ ମହାଭିନିଷ୍କ୍ରମଣ କୁହାଯାଏ ।

ଏହିମତ ନିଃଶବ୍ଦ ରାତିରେ ଶାକ୍ୟ ଏବଂ କୋଲିୟ ରାଜ୍ୟ ଅତିକ୍ରମ କରି ସିଦ୍ଧାର୍ଥ ପ୍ରଭାତ ସମୟରେ ଅନୋମା ନଦୀ ପାର ହୋଇଗଲେ ।

ଅନୋମା ନଦୀର କୂଳରେ ଘୋଡ଼ାରୁ ଓହ୍ଲାଇ ସୁନାର ହାର ଏବଂ ଦେହର ସମସ୍ତ ଆଭରଣ ବାହାର କରି ଛନ୍ଦକକୁ କହିଲେ, "ଛନ୍ଦକ, ମୋର ଦେହର ଆଭରଣ ଓ ଘୋଡ଼ାକୁ ନେଇ ତୁ ଫେରିଯା । ମୁଁ ଆଉ ଘୋଡାରେ ବସି ଯିବି ନାହିଁ । ଆଜଠାରୁ ମୁଁ ସନ୍ନ୍ୟାସୀର ଦୀକ୍ଷା ଗ୍ରହଣ କରିବି ଓ ଚାଲି ଚାଲି ଯିବି ।"

ରାଜପ୍ରାସାଦର ବିଳାସରେ ବଢିଥିବା ରାଜକୁମାରଙ୍କୁ ଏପରି ଗୁଡ଼ ସିଦ୍ଧାର୍ଥଙ୍କ ଛନ୍ଦକର ମନ ବଳିଲା ନାହିଁ । ଫେରିଯିବା ପାଇଁ ନାନା ଅନୁନୟ

ବନସ୍ତ କଲା । ସେଥିରେ ଗୌତମ ରାଜି ନ ହେବାରୁ କହିଲା, "କୁମାର, ତୁମେ ଯଦି ନ ଫେରିବ, ମୁଁ ମଧ୍ୟ ତୁମ ସହିତ ସନ୍ନ୍ୟାସୀ ହୋଇ ରହିବି ।"

ଗୌତମ କହିଲେ; "ନା, ତୁ ସନ୍ନ୍ୟାସୀ ହେବା କଥା ହେବ ନାହିଁ । ତୁ କପିଳବାସ୍ତୁ ଫେରିଯାଇ ମୋର ପିତା, ମାତାଙ୍କୁ କୁଶଳ ସମ୍ବାଦ କହି-ଦେବୁ ।"

ଛନ୍ଦକ ସିଦ୍ଧାର୍ଥଙ୍କୁ ପ୍ରଣାମ କରି ଗମ୍ଭୀର ମନଦୁଃଖରେ ଫେରିଲା । କନ୍ଥକ ଅଶ୍ୱ ଦେଖିଲା ଯେ, ତା'ର ମାଲିକଙ୍କ ସହିତ ଆଉ ସାକ୍ଷାତ ହେବନାହିଁ । କ୍ଳାନ୍ତ ଓ ଦୁଃଖରେ ତା'ର ହୃଦୟ ଦବି ଗଲା ଏବଂ ସେହିଠାରେ ସେ ପ୍ରାଣତ୍ୟାଗ କଲା ।

ସକାଳ ହେବାରୁ ରାଜପ୍ରାସାଦରେ ଏବଂ କପିଳବାସ୍ତୁ ସହରରେ ସିଦ୍ଧାର୍ଥ ନ ଥିବା ସମ୍ବାଦ ପ୍ରଚାର ହୋଇଗଲା । ରାଜା ଶୁଦ୍ଧୋଦନ ଚାରିଆଡ଼କୁ ଲୋକ ପଠାଇଲେ । ରାଣୀ ମହାପ୍ରଜାପତି ଓ ଯଶୋଧାରା ତାଙ୍କର ପରିଚାରିକାଙ୍କ ସହ ବ୍ୟାକୁଳସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ମାତ୍ର ଦିନ ଅତୀତ ହୋଇଥିବା ସମୟରେ ଛନ୍ଦକ କୁମାରଙ୍କର ଆଭରଣ ନେଇ ପହଞ୍ଚିଲା ଓ ସମସ୍ତ ସମ୍ବାଦ ଦେଇ କହିଲା, "ମହାରାଜ, କୁମାର ଆଉ ଫେରିବେ ନାହିଁ ।" ରାଜା ଶୁଦ୍ଧୋଦନଙ୍କର ସୁନାର ସ୍ୱପ୍ନ ଚୂନା ହୋଇଗଲା । କାହିଁ ଚକ୍ରବର୍ତ୍ତୀ ରାଜା, କାହିଁ ଗୈରିକଧାରୀ ସନ୍ନ୍ୟାସୀ !



# ଗୈରିକ ଦୀକ୍ଷା ଓ ଜ୍ଞାନର ଅନ୍ୱେଷଣ

ସିଦ୍ଧାର୍ଥ ଅଙ୍ଗର ଆଭରଣ ଛନ୍ଦକ ହାତରେ ଫେରାଇ ଦେବା ପରେ ଦେଖିଲେ ଯେ, ତାଙ୍କର ମୁଣ୍ଡରେ ସଜା ହୋଇଥିବା ବାଳ ସନ୍ନ୍ୟାସୀର ପାଇଁ ନୁହେଁ । ସେ ନିଜ ହାତରେ ଖଣ୍ଡା ନେଇ ମୁଣ୍ଡବାଳ କାଟିଦେଲେ ଓ ପବନରେ ଉଡ଼ାଇ ଦେଇ କହିଲେ, "ଯଦି ମୁଁ ବୁଦ୍ଧ ହେବି, ତା' ହେଲେ, ଏ ବାଳ ଯାଇ ଶୂନ୍ୟରେ ରହିବ । ଭୂଇଁ ଉପରେ ପଡ଼ିବ ନାହିଁ ।" ମୁହୂର୍ତ୍ତିକ ମଧ୍ୟରେ ଏ ବାଳ ଯାଇ ଶୂନ୍ୟରେ ରହିଗଲା ।

ଶୁଣି ସିଦ୍ଧାର୍ଥ ଭାବିଲେ, "ମୁଁ ବାରଣସୀର ଯେଉଁ ସୂକ୍ଷ୍ମ ପଟ୍ଟବସ୍ତ୍ର ପିନ୍ଧିଛି, ଏହା ସନ୍ନ୍ୟାସୀଙ୍କର ଯୋଗ୍ୟ ନୁହେଁ । ମୁଁ ଏହାକୁ ପରିତ୍ୟାଗ କରି ସନ୍ନ୍ୟାସୀର ବଳ୍‌କଳ ବାସ ପରିଧାନ କରିବି ।" ଏହି ସମୟରେ ଜଣେ ସନ୍ନ୍ୟାସୀ ସେହିବାଟେ ଯାଉଥିଲେ । ସେ ସିଦ୍ଧାର୍ଥଙ୍କ ଇଚ୍ଛା ଶୁଣିପାରି ତାଙ୍କୁ ଗୋଟିଏ ବଳ୍‌କଳ ବସ୍ତ୍ର, ଭିକ୍ଷା ପାତ୍ର, ଖୁର, ଛୁଞ୍ଚି, ପାଣି ଆଣିବାର ପାତ୍ର ଦେଲେ । ଘଟିକାର ମହାବ୍ରହ୍ମ ସିଦ୍ଧାର୍ଥଙ୍କ ମନର ସଙ୍କଳ୍ପ ଜାଣି ପାରି ତାଙ୍କୁ ସାହାଯ୍ୟ କରିବା ପାଇଁ ଏପରି ସନ୍ନ୍ୟାସୀର ବେଶରେ ଆସିଥିଲେ ବୋଲି କଥିତ ଅଛି ।

ସନ୍ନ୍ୟାସୀର ବଳ୍‌କଳ ବାସ ଓ ଭିକ୍ଷାପାତ୍ର ଧାରଣ କରି ସିଦ୍ଧାର୍ଥ ଅନୁପ୍ରିୟା ନାମକ ନଗରର ବାହାରେ ଥିବା ଆମ୍ର ବଗିଚାରେ ସାତଦିନ କଟାଇଲେ । ଏହି ସାତଦିନ କାଳ ସେ ତାଙ୍କର ନୂତନ ଜୀବନର ଆନନ୍ଦରେ ମଗ୍ନ ରହିଲେ । ବର୍ତ୍ତମାନ ସେ ସଂସାର ବନ୍ଧନରୁ ମୁକ୍ତ । ତାଙ୍କ ଆଗରେ

ଏକମାତ୍ର ସାଧନାର ମାର୍ଗ ଅଛି । ଏହି ମାର୍ଗରେ ସେ ବିଚରଣ କରିବେ ଏବଂ ବୁଦ୍ଧତ୍ୱ ଲାଭ କରିବେ । ତାଙ୍କପାଇଁ ଅନ୍ୟ ବିଶ୍ରାମ ନାହିଁ । ଯେ ପର୍ଯ୍ୟନ୍ତ ଲକ୍ଷ୍ୟ ସିଦ୍ଧି ନ ହୋଇଛି, ତାଙ୍କ ଆତ୍ମାର ଶାନ୍ତି ନାହିଁ । ସେ ସାତଦିନ ପରେ ଅନୁପ୍ରିୟାର ଆମ୍ରବନ ପରିତ୍ୟାଗ କରି ସେଠାରୁ ତିରିଶ ଯୋଜନ ଦୂରରେ ଥିବା ରାଜଗୃହ ନଗରୀରେ ପହଞ୍ଚିଲେ । ରାଜଗୃହ ପ୍ରସିଦ୍ଧ ମଗଧ ରାଜ୍ୟର ରାଜଧାନୀ ଥିଲା ଓ ରାଜା ବିମ୍ବିସାର ସେଠାରେ ରାଜପଣ କରୁଥିଲେ ।

ସିଦ୍ଧାର୍ଥଙ୍କ ସୁନ୍ଦର ରୂପରେ ଭିକ୍ଷୁକର ବେଶ କପରି ସାଜୁ ନ ଥିଲା, ସେ ସମ୍ପର୍କରେ ଏକ ସୁନ୍ଦର କାହାଣୀ ବର୍ଣ୍ଣିତ ଅଛି । ସେ ନଗର ମଧ୍ୟରେ ଭିକ୍ଷା କରୁଥିବା ବେଳେ ତାଙ୍କର ଅସାଧାରଣ ରୂପରେ ନଗରବାସୀ ମୁଗ୍ଧ ହୋଇଗଲେ । କୌଣସି ସନ୍ନ୍ୟାସୀ ବା ଭିକ୍ଷୁକର ଏପରି ସୁନ୍ଦର ଚେହେରା ସେମାନେ କେବେ ଦେଖି ନ ଥିଲେ । କେତେକ ରାଜପୁରୁଷ ସିଦ୍ଧାର୍ଥଙ୍କୁ ଦେଖି ରାଜା ବିମ୍ବିସାରଙ୍କ ଆଗରେ ଯାଇ କହିଲେ, "ଏପରି ସୁନ୍ଦର 'ରୂପର ଜଣେ ଯୁବକ ଏ ନଗରୀରେ ଭିକ୍ଷା ମାଗୁଚି ଯେ ସେ ମନୁଷ୍ୟ, ନା ଦେବ-ଲୋକ ନା ନାଗଲୋକର ପୁରୁଷ ଆମେ ବିଶ୍ୱାସ କରି ପାରୁ ନାହୁଁ ।" ରାଜା ନିଜର ପ୍ରାସାଦ ଉପରୁ ସିଦ୍ଧାର୍ଥଙ୍କୁ ଦେଖି ଏବଂ ତାଙ୍କର ଅସାଧାରଣ ରୂପରେ ମୁଗ୍ଧ ହୋଇ ରାଜପୁରୁଷମାନଙ୍କୁ ଆଦେଶ ଦେଲେ, "ତୁମେମାନେ ଯାଅ । ଯଦି ଏ ମନୁଷ୍ୟ ହୋଇ ନ ଥିବ, ତା'ହେଲେ ନଗରରୁ ବାହାରି ଅନ୍ତର୍ଦ୍ଧାନ ହୋଇଯିବ । ଯଦି ଦେବତା ହୋଇଥିବ, ତା'ହେଲେ ଆକାଶକୁ ଚାଲିଯିବ । ଯଦି ନାଗଲୋକର ହୋଇଥିବ, ତା' ହେଲେ ପାଣିରେ ବୁଡ଼ି ଲୁଚି ଯିବ । ଯଦି ମନୁଷ୍ୟ ହୋଇଥିବ, ତା' ହେଲେ ସେ ଯାହା ଭିକ୍ଷା ସଂଗ୍ରହ କରିଥିବ, ତାହା ଭୋଜନ କରିବ ।"

ସିଦ୍ଧାର୍ଥ କିଛି ସମୟ ଭିକ୍ଷା କଲା ପରେ, 'ଏହା ମୋ ପାଇଁ ଯଥେଷ୍ଟ ହେବ' ବୋଲି କହି ନଗର ବାହାରକୁ ଚାଲିଗଲେ ଏବଂ ଅଦୂରବର୍ତ୍ତୀ ପାଣ୍ଡବ ପର୍ବତର ଛାୟାରେ ବିଶ୍ରାମ ନେଇ ସଂଗୃହୀତ ଖାଦ୍ୟ ଭୋଜନ କରିବାକୁ ଆରମ୍ଭ କଲେ । ଜୀବନରେ ଏପରି ଖାଦ୍ୟର ଅନୁଭୂତି ତାଙ୍କର କେବେ ନ ଥିଲା ।

ପ୍ରଥମେ ଖାଇବାକୁ ଇଚ୍ଛା ହେଉନାହିଁ । ପରେ ମନେ ମନେ ଭାବିବାକୁ ଲାଗିଲେ, 'ମୁଁ ଜାଣି ଶୁଣି ରାଜଭୋଗ୍ୟ ପଦାର୍ଥ ପରିତ୍ୟାଗ କରି ସନ୍ନ୍ୟାସୀର ଭିକ୍ଷା ଗ୍ରହଣ କରିଛି । ତେଣୁ ଏବେବେଳେ ଖାଦ୍ୟ ପଦାର୍ଥରେ ଏ ସଙ୍କୋଚ ଉଚିତ ନୁହେଁ ।' ଏହିପରି ନିଜକୁ ବୁଝାଇ ସେ ଭିକ୍ଷା ଦ୍ରବ୍ୟ ଭୋଜନ କଲେ । ରାଜପୁରୁଷମାନେ ଯାଇ ଏକଥା ରାଜାଙ୍କୁ କହିଲେ । ରାଜା ତୁରନ୍ତ ନଗରରୁ ବାହାରି ସିଦ୍ଧାର୍ଥଙ୍କ କୁଶଳ ଜିଜ୍ଞାସା କଲେ ଏବଂ ସେ ଫେରିଗଲେ ତାଙ୍କର ରାଜ୍ୟ ଓ ଧନରୁ ଅଧେ ତାଙ୍କ ହାତରେ ଦେବେ ବୋଲି କହିଲେ; କିନ୍ତୁ ସିଦ୍ଧାର୍ଥ ଉତ୍ତର ଦେଲେ, "ମହାରାଜ, ମୋର ରାଜ୍ୟ ଲୋଡ଼ା ନାହିଁ । ମୁଁ ଭୋଗ କାମନା କରୁନାହିଁ । ମୋର ମଧ୍ୟ ଦିନେ ରାଜୈଶ୍ୱର୍ଯ୍ୟ ଥିଲା । ମୁଁ ସବୁ ଛାଡ଼ି ବୁଦ୍ଧତ୍ୱ ଲାଭର କାମନାରେ ବାହାରିଛି । ତେଣୁ ମୋତେ ଏ ପ୍ରଲୋଭନ ଦେଖାନ୍ତୁ ନାହିଁ ।"

ରାଜା ବିମ୍ବିସାର ବହୁତ ଅନୁରୋଧ କରିବା ପରେ ସିଦ୍ଧାର୍ଥଙ୍କର କୌଣସି ପରିବର୍ତ୍ତନ ନ ଦେଖି ଶେଷକୁ କହିଲେ, "ଆଚ୍ଛା, ତୁମେ ଯେବେ ବୁଦ୍ଧ ହେବ, ତା' ହେଲେ ପ୍ରଥମେ ମୋର ରାଜ୍ୟକୁ ଆସିବ ।" ସିଦ୍ଧାର୍ଥ ଆସିବେ ବୋଲି ରାଜାଙ୍କୁ ପ୍ରତିଶ୍ରୁତି ଦେଲେ ।

କିଛି ଦିନ ଏଣେ ତେଣେ ବୁଲିବା ପରେ ଶେଷକୁ ଆଲାର କାଲାମ ନାମକ ଜଣେ ବୃଦ୍ଧ ସନ୍ନ୍ୟାସୀଙ୍କ ପାଖକୁ ଯାଇ ସନ୍ନ୍ୟାସୀ ଜୀବନର ସାଧନା ଓ ଶୃଙ୍ଖଳା ଅଭ୍ୟାସ କଲେ । ସେଠାରୁ ଯାହା ଶିଖିବାର କଥା, ଅଳ୍ପକାଳ ମଧ୍ୟରେ ଶିଖିଗଲେ ଏବଂ ଆଉ ସେ ସ୍ଥାନ ତାଙ୍କୁ ଭଲ ଲାଗିଲା ନାହିଁ ।

ପୁଣି କିଛିଦିନ ବୁଲିବା ପରେ ଉଦ୍ଦକ ରାମପୁତ୍ର ନାମକ ଆଉ ଜଣେ ସନ୍ନ୍ୟାସୀଙ୍କ ଆଶ୍ରମରେ ରହି ଯୋଗ ଓ ସମାଧି ଶିକ୍ଷା କଲେ । ମାତ୍ର ସେଠାରୁ ଯାହା ଶିଖିବାର କଥା ଶିଖି ସାରିବା ପରେ ସେ ଦେଖିଲେ ଯେ, ଏଥିରେ ବୁଦ୍ଧତ୍ୱର ଆଶା ନାହିଁ । ଅଳ୍ପ ଦିନ ମଧ୍ୟରେ ସେ ସ୍ଥାନ ଛାଡ଼ି ଦେଲେ ।

ଏହାପରେ ଜ୍ଞାନ ଲାଭ ଆଶାରେ ସେ ସମଗ୍ର ମଗଧ ରାଜ୍ୟ ବୁଲିଛନ୍ତି । କେତେ ନଗର, ଗ୍ରାମ, ନଦୀ ଓ ଅରଣ୍ୟ ଅତିକ୍ରମ କରିଛନ୍ତି । ବହୁ ଯୋଗୀ, ସନ୍ନ୍ୟାସୀ ଓ ସାଧାରଣ ଲୋକଙ୍କ ସଂପର୍କରେ ଆସିଛନ୍ତି । କିଏ ତାଙ୍କୁ ଲକ୍ଷ୍ୟ ଲାଭର ଆଶା ଦେଖାଇଛି । କିଏ ବା ପୁଣି ରାଜପ୍ରାସାଦକୁ ଫେରିଯିବା ପାଇଁ ପ୍ରବର୍ତ୍ତାଇଛି । ମାର ବା ପ୍ରଲୋଭନକାରୀ ବାରମ୍ବାର ତାଙ୍କ ମନରେ ସ୍ତ୍ରୀ, ପୁତ୍ର ଓ ରାଜପ୍ରାସାଦର ପୂର୍ବ ସ୍ମୃତି ଜଗାଇଛି । ବହୁ ଲୋକ ଥଟ୍ଟା କରିଛନ୍ତି । କ୍ଷୁଧା, ତୃଷା ଓ ପରିବେଶର କଷ୍ଟରେ ବହୁ ଦୁଃଖ ଭୋଗ କରିବାକୁ ହୋଇଛି । ମାତ୍ର ବୁଦ୍ଧତ୍ୱ ଲାଭର ଯେଉଁ ଦୁର୍ବାର କ୍ଷୁଧା ତାହା ମେଣ୍ଟି ନାହିଁ ।

ଶେଷକୁ ହତାଶାର ଏକ ମୁହୂର୍ତ୍ତରେ ତାଙ୍କ ମନରେ ହଠାତ୍ ଏକ ନୂଆ ଧାରଣା ଆସି ପହଞ୍ଚିଛି । ବିନା କାୟା କ୍ଳେଶରେ ବା ଶରୀରକୁ କଷ୍ଟ ଦେଇ କଠୋର ତପ ସାଧନା ନ କଲେ ବୁଦ୍ଧତ୍ୱ ଲାଭ ହେବ ନାହିଁ । ସେତେବେଳେ ଭାରତରେ ଏହି କାୟା କ୍ଳେଶ ବା କୃଚ୍ଛ୍ର ସାଧନା ହୋଇ ଏକ ସାଧନା ଥିଲା । ଏଥିରେ ଯୋଗୀ ଖରା, ଶୀତ ଓ ବର୍ଷା ସହି ଗୋଟିଏ ଆସନରେ ବସି ତପସ୍ୟା କରୁଥିଲେ । ଘୋର ନିଦାଘରେ ଚାରିପଟେ ନିଆଁ ଜାଳି ତପସ୍ୟା କରୁଥିଲେ । ଶୀତ ଋତୁରେ କଣାର୍ଦ୍ଧରେ ପାଣିରେ ଠିଆ ହୋଇ ଧ୍ୟାନ କରୁଥିଲେ । କେହି କେହି ଦୁଇବାହୁ ଉପରକୁ ଟେକି ବର୍ଷ ବର୍ଷ ଧରି ରହୁଥିଲେ । କ୍ଷୁଧା ତୃଷା ଭୁଲିଯିବା ପାଇଁ ଚେଷ୍ଟା କରୁଥିଲେ ଏବଂ ବହୁଦିନ ଖାଦ୍ୟର ଅଭାବରେ ଦେହକୁ କଣ୍ଟାପରି କରି ନାକଦଣ୍ଡାରେ ଅଣି ଜୀବନକୁ ରଖୁଥିଲେ । ଯେ ଯେତେ ବେଶୀ କଷ୍ଟ ସାଧନା କରି ପାରୁଥିଲା, ଯୋଗୀମାନଙ୍କ ମଧ୍ୟରେ ତା'ର ସେତିକି ଆଦର ଥିଲା । ସିଦ୍ଧାର୍ଥ ଠିକ୍ କଲେ, ଏହି ମାର୍ଗ ସେ ଗ୍ରହଣ କରିବେ । ହୁଏତ ଏଥିରେ ଜ୍ଞାନ ଲାଭ ହୋଇପାରେ ।



# 'ବୀଣା-ତାର ଛିଡ଼ିଯିବ'

କଠୋର ତପସ୍ୟା ପାଇଁ ଏକ ସ୍ଥାନ ନିରୂପଣ କରିବା ଉଦ୍ଦେଶ୍ୟରେ ବହୁଦିନ ବୁଲି ବୁଲି ସିଦ୍ଧାର୍ଥ ଶେଷକୁ ମଗଧ ରାଜ୍ୟର ଉରୁବେଲାନାମକ ନଗରରେ ପହଞ୍ଚିଲେ । ଉରୁବେଲାକୁ ଲାଗି ଏକ ରମଣୀୟ ସ୍ଥାନ ଥିଲା । ଫଳ ପୁଷ୍ପରେ ଭରା ଏକ ସୁନ୍ଦର ଅରଣ୍ୟ ଏବଂ କଳ-କଳ-ନାଦିନୀ ନଦୀ । ଏହି ନଦୀକୁ ସେତେବେଳେ ନେରଞ୍ଜରା ବୋଲି କହୁଥିଲେ । ଏବେ ଏହା ଫଲ୍‌ଗୁ ନାମରେ ସୁପରିଚିତ । ନଦୀର ଘାଟଗୁଡ଼ିକ ସୁଦୃଶ୍ୟ ଥିଲା ଏବଂ ଉଭୟ ପାର୍ଶ୍ୱରେ ଆମ୍ରକୋଠା ଅଞ୍ଚଳରେ ସୁନ୍ଦର ଗାଁମାନ ଥିଲା । ସିଦ୍ଧାର୍ଥ ଠିକ୍ କଲେ, ତାଙ୍କ ସାଧନାର ପାଇଁ ହେଉଛି ଏହି ଉପଯୁକ୍ତ ସ୍ଥାନ ।

ଏହି ସ୍ଥାନରେ ଛ' ବର୍ଷ ରହି ସେ ଯେଉଁ କଠୋର ତପସ୍ୟା କରିଥିଲେ, ତା'ର ପଟାନ୍ତର ନାହିଁ । ଶରୀର କଷ୍ଟ ଦେବା ପାଇଁ ଯେତେ ପ୍ରକାର କୃଚ୍ଛ୍ର ସାଧନା ଥାଇପାରେ, ସେ ସମସ୍ତ ସାଧନା ସେ କରିବାକୁ ଲାଗିଲେ । ପ୍ରଥମେ ପ୍ରଥମେ କଷ୍ଟ ହେଲା । ପରେ ତାହା ଅଭ୍ୟାସଗତ ହୋଇଗଲା । ତାଙ୍କର ଧୈର୍ଯ୍ୟ ଓ କଠୋର ତପସ୍ୟାର ସମ୍ବାଦ ଚାରିଆଡ଼େ ଖେଳିଗଲା ଏବଂ ଲୋକେ ତାହା ଶୁଣି ଆଶ୍ଚର୍ଯ୍ୟ ହେବାକୁ ଲାଗିଲେ । ପାଞ୍ଚଜଣ ସନ୍ନ୍ୟାସୀ ଗାଁ, ସହର ଓ ରାଜଧାନୀମାନଙ୍କରେ ଭିକ୍ଷାଚରଣ କରି ଶେଷକୁ ଗୌତମଙ୍କ ପାଖରେ ଆସି ପହଞ୍ଚିଲେ ଏବଂ ତାଙ୍କର ତପଶ୍ଚର୍ଯ୍ୟା ଦେଖି ମନେ ମନେ ଭାବିଲେ, "ଏ ଦିନେ ବୁଦ୍ଧ ହେବ । ତେଣୁ ଏହାର ସେବାରେ ରହି ଓ ଏହାର ଶିଷ୍ୟତ୍ୱ ଗ୍ରହଣ କରି ଶେଷକୁ ଆମେ ଦିନେ ଜ୍ଞାନ ଲାଭ କରି ପାରିବା ।" ଏହି ପାଞ୍ଚ ଜଣ ସନ୍ନ୍ୟାସୀ ସେଠାରେ ରହି ଗୌତମଙ୍କ ସେବାରେ ଲାଗି ରହିଲେ ।

ଏହିପରି ତପସ୍ୟା କଲାପରେ ଗୌତମ ଭାବିଲେ ସ୍ଥିର କଲେ ଯେ, ଏଣିକି ସେ କ୍ଷୁଧା, ତୃଷା ଭୁଲିଯିବେ ଏବଂ ତାଙ୍କର ସମସ୍ତ ମନ ଓ ଧ୍ୟାନ କେବଳ ଲକ୍ଷ୍ୟ ଲାଭର ଆଶାରେ ନିୟୋଜିତ କରିବେ । ଏହା ସ୍ଥିର କରି ସେ କ୍ରମେ ତାଙ୍କର ଖାଦ୍ୟ କମାଇବାକୁ ଲାଗିଲେ । ସାମାନ୍ୟ ଫଳମୂଳରେ ବଞ୍ଚି-ରହି, ଶେଷକୁ ସେ ଖାଦ୍ୟ ଖାଇବା ସମ୍ପୂର୍ଣ୍ଣ ଭାବରେ ଛାଡ଼ି ଦେଲେ । କ୍ରମେ କ୍ରମେ ଅନାହାରରେ ତାଙ୍କ ଶରୀର ଦୁର୍ବଳ ହୋଇପଡ଼ିଲା । ସୁନା ରଙ୍ଗର ଦେହ କଳା ପଡ଼ିଗଲା । କଙ୍କାଳର ହାଡ ଗଣି ହୋଇଗଲା । ପେଟ ପିଠିରେ ଲାଗିଗଲା । ଆଖି କୋରଡ଼ରେ ପଶିଗଲା । ଦେହ ସୁଖା ଝିଅ ପରି ହୋଇଗଲା ଏବଂ ମହାପୁରୁଷର ସମସ୍ତ ଲକ୍ଷଣ ଲୁଚିଗଲା । ଏହିପରି ଅବସ୍ଥାରେ ଖୁବ ଧ୍ୟାନରତ ହୋଇଥିବା ବେଳେ ଅତି ଦୁର୍ବଳତାରୁ ସେ ମୂର୍ଚ୍ଛା ହୋଇ ପଡ଼ିଗଲେ । ତାଙ୍କ ପାଖରେ ଥିବା ପାଞ୍ଚଜଣ ସନ୍ନ୍ୟାସୀ କହିଲେ, "ତପସ୍ୟା କରୁ କରୁ ଶ୍ରମଣ ଗୌତମ ମରିଗଲେ । ଏ ଜ୍ଞାନ ଲାଭ କରି ପାରିଲେ ନାହିଁ । ଆମର ଏତେ ଦିନ ଅପେକ୍ଷା କରି ରହିବା ବୃଥା ହେଲା ।" ସେତେବେଳେ ଭାରତବର୍ଷରେ ଏହିପରି କାୟା କ୍ଲେଶ କରି ବହୁ ସନ୍ନ୍ୟାସୀଙ୍କର ମୃତ୍ୟୁ ହୋଇ ଯାଉଥିଲା ।

ଚେତନା ଆସିବା ପରେ ସିଦ୍ଧାର୍ଥ ଦେଖିଲେ ଯେ ସେ ମରଣରେ ମୁହଁକୁ ବଞ୍ଚି ଯାଇଛନ୍ତି । ଏହିପରି ଅନାହାର ଓ କୃଚ୍ଛ୍ର ସାଧନାରେ ଶରୀରକୁ କଷ୍ଟଦେଇ ଦିନେ ମୃତ୍ୟୁ ହୋଇଯିବ, ମାତ୍ର ବୁଦ୍ଧତ୍ୱ ଲାଭ ହେବ ନାହିଁ । ସେ ସ୍ଥିର କଲେ ଯେ, ଏଣିକି ଶରୀରକୁ ବଞ୍ଚାଇବା ପାଇଁ ସେ ଭିକ୍ଷା କରିବେ ଏବଂ ଖାଦ୍ୟ ଖାଇବେ । ଏହି ଦିନଠାରୁ ସେ ଭୋଜନ ଗ୍ରହଣ କରିବା ଆରମ୍ଭ କରି ଦେଲେ । ସେଠାରେ ଅପେକ୍ଷା କରିଥିବା ପାଞ୍ଚଜଣ ସନ୍ନ୍ୟାସୀ ମନେ ମନେ ଭାବିଲେ, "ଛ' ବର୍ଷ ତପସ୍ୟା କରି ଏ ବୁଦ୍ଧ ହୋଇ ପାରିଲା ନାହିଁ । ଏଣିକି ଭିକ୍ଷା କରି, ସ୍ଥୂଳ ଆହାର ଖାଇ ଏ ବୁଦ୍ଧ ହେବ, ଏହା ଅସମ୍ଭବ କଥା । ଏ କ୍ଷୁଧାତୁର, ଲୋଭୀ ଲୋକ । ତପସ୍ୟା ମାର୍ଗରୁ ଏ ଭ୍ରଷ୍ଟ ହୋଇଗଲାଣି । ଏଣିକି ଏହା ପଛରେ ଗୋଡ଼ାଇ କିଛି ଲାଭ ନାହିଁ ।" ଏଇ କଥା ମନେ ମନେ ଭାବି ଏ ପାଞ୍ଚଜଣ ସନ୍ନ୍ୟାସୀ ଗୌତମଙ୍କୁ ଛାଡ଼ି ବାରାଣସୀ ପାଖରେ ଥିବା ଋଷିପତ୍ତନକୁ ଚାଲିଗଲେ ।

ଗୌତମ ଖାଦ୍ୟ ତ୍ୟାଗ କରିବାର କିଛି କାଳ ଅତୀତ ହୋଇଗଲା । ସେ ମନେ ମନେ ଚିନ୍ତା କରି ଦେଖିଲେ ଯେ, ଏପରି କାୟା କ୍ଲେଶରେ କିଛି ଫଳ ମିଳିଲା ନାହିଁ । ଛ'ବର୍ଷ କାଳ ଏହିପରି ଶରୀରକୁ କଷ୍ଟ ଦେଇ କିଛି ଫଳ ମିଳିଲା ନାହିଁ । ଏଣିକି କିଛି ନୂଆ ବାଟ ଚିନ୍ତା କରିବାକୁ ହେବ । ଦିନେ ସେ ଏହିପରି ଭାବୁଛନ୍ତି, ହଠାତ୍ ଦୂରରୁ ଏକ ସଙ୍ଗୀତର ସ୍ୱର ଶୁଣାଗଲା । ନଗର ଅଭିମୁଖରେ ନାଚ କରିବା ଉଦ୍ଦେଶ୍ୟରେ କେତେଗୁଡ଼ିଏ ଯୁବତୀ ଯାଉଥିଲେ । ବଂଶୀ, ବୀଣା ଓ ମୃଦଙ୍ଗ ଧରି ଏବଂ ତାର ସ୍ୱର ସହିତ ମିଳାଇ ସେମାନେ ଗୀତ ଗାଇ ଗାଇ ଯାଉଥିଲେ । ଏ ଗୀତର ଅର୍ଥ ହେଉଛି—

"ମୋର ବୀଣା ବାଜିବା ସଙ୍ଗେ ସଙ୍ଗେ ଲୋକର ହୃଦୟ ନାଚି ଉଠେ । ଅହା, ମୋର ବୀଣାର ସ୍ୱର କେଡ଼େ ମଧୁର । ଏ ବୀଣାର ତାରକୁ ମୁଁ ଜୋରରେ କସି ଦେଉନାହିଁ । କାରଣ ତାର ଛିଡ଼ି ଯିବ ଓ ସଙ୍ଗେ ସଙ୍ଗେ ସଙ୍ଗୀତ ଲୁଚି ଯିବ । ମୁଁ ଏ ବୀଣାର ତାରକୁ ଢିଲା କରୁନାହିଁ । କାରଣ ମୋର ଯନ୍ତ୍ରରୁ ଆଉ ସ୍ୱର ବାହାରିବ ନାହିଁ ଏବଂ ସଙ୍ଗୀତ ମରିଯିବ । ତେଣୁ ମୁଁ ଏ ବୀଣାର ତାରକୁ କସିବି ନାହିଁ କି ଢିଲା କରିବି ନାହିଁ ।"

ସାମାନ୍ୟ ନର୍ତ୍ତକୀଙ୍କ ଦଳଠାରୁ ଗୌତମ ଶିକ୍ଷା ଲାଭ କଲେ । ଏପରି କୃଚ୍ଛ୍ର ସାଧନା କରି ଶରୀରକୁ କଷି ଦେଲେ ସେଥିରୁ ପ୍ରାଣର ଉଚ୍ଛ୍ୱାସ ବାହାରିବ ନାହିଁ କି ଅସଂଯତ ବା ଢିଲା ହୋଇଗଲେ ଜୀବନର ମର୍ଯ୍ୟାଦା ତୁଟି ଯିବ । ସେ ଭୁଲ ବାଟରେ ଯାଉଛନ୍ତି ।



# ସୁଜାତାର କ୍ଷୀର

ବୁନ୍ଦେଲା ପ୍ରଦେଶର ସେନାନୀ ନାମକ ଏକ ନଗର ଥିଲା । ସେଠାରେ ଧନୀ କୃଷକ କୁଳରେ ସୁଜାତା ନାମରେ ଗୋଟିଏ ସୁନ୍ଦରୀ କନ୍ୟା ତରୁଣୀ ହେବା ପରେ ବୃକ୍ଷ ଦେବତାଙ୍କ ନିକଟରେ ଏହି ବର ପ୍ରାର୍ଥନା କରି-ଥିଲା ଯେ, ସେ ଯଦି ତା'ର ସମାନ ପତି ଲାଭ କରିବ ଏବଂ ତା'ର ପ୍ରଥମ ଗର୍ଭରୁ ପୁତ୍ର ଜାତ ହେବ, ତା'ହେଲେ ସେ ଏକଲକ୍ଷ ମୁଦ୍ରା ଖର୍ଚ୍ଚରେ ପ୍ରତିବର୍ଷ ପୂଜା କରାଇବ । ସୁଜାତାର ଏହି ପ୍ରାର୍ଥନା ସଫଳ ହୋଇଥିଲା । ସେ ଏକ ଉଚ୍ଚବଂଶଜାତ ସୁନ୍ଦର ଯୁବକକୁ ସ୍ୱାମୀରୂପେ ଲାଭ କରିଥିଲା ଏବଂ ତା'ର ପ୍ରଥମ ଗର୍ଭରୁ ପୁତ୍ର ଜାତ ହେଲା । ତେଣୁ ସେ ମନସ୍ଥ କଲା ଯେ, ସେ ବର୍ଷ ସେ ବୃକ୍ଷ ଦେବତାଙ୍କର ପୂଜାର ଆୟୋଜନ କରିବ ।

ବୃକ୍ଷ ଦେବତାଙ୍କ ପାଇଁ ସୁଜାତା ନିଜ ହାତରେ ତିଆରି କ୍ଷୀରି ଭୋଗ କରିବା ପାଇଁ ମନସ୍ଥ କଲା । ଏଥିପାଇଁ ସେ ଏକ ହଜାର ଗାଈଙ୍କୁ ଆଣି ତାଙ୍କୁ ଭଲ ଖାଇବାକୁ ଦେଲା । ସେମାନେ ଯାହା ଦୁଧ ଦେଲେ, ସେ ଦୁଧ ପାଞ୍ଚ ଶହ ଗାଈଙ୍କୁ ପିଇବାକୁ ଦେଲା । ପାଞ୍ଚ ଶହ ଗାଈ ଏ ଦୁଧ ଖାଇ ଯେଉଁ ଦୁଧ ଦେଲେ ତାକୁ ଅଢ଼େଇଶହ ଗାଈଙ୍କୁ ଦେଲା । ଏହିପରି କ୍ରମରେ ଷୋଳଟି ଗାଈର ଦୁଧ ଶେଷରେ ସବୁଠାରୁ ହୃଷ୍ଟପୁଷ୍ଟ ଆଠଟି ଗାଈଙ୍କୁ ଖାଇବାକୁ ଦେଲା । ସେମାନେ ଯେଉଁ ଦୁଧ ଦେଲେ ତାହା ଖୁବ୍ ଗାଢ଼ ଓ ମଧୁର ହେଲା । ଏହି ଗାଢ଼ ଓ ମଧୁର ଦୁଧରେ, ଖୁବ୍ ମସ୍ଣ, ବାସନା ଚାଉଳ ଗଣି

ଗଣି କରି ଅଳ୍ପ ପକାଇ ଗୋଟିଏ ସ୍ୱଚ୍ଛନ୍ଦ ଚୁଲି ତିଆରି କରି, ଚନ୍ଦନ କାଠ ଜାଳି କ୍ଷୀରି ତିଆରି କଲା । ସୁଜାତା ଖୁବ ଶୁଦ୍ଧ ଚିତ୍ତରେ ଏହି ଦେବଭୋଗ୍ୟ ପଦାର୍ଥ ପ୍ରସ୍ତୁତ କରିଥିଲା ।

ସୁଜାତାର ଘର ନିକଟରେ ଏକ ଆମ୍ବଗଛ ଥିଲା ଏବଂ ତା'ର ମୂଳରେ ଗୋଟିଏ ସୁନ୍ଦର ଚବୁତାରା ବା ବେଦୀ କରା ଯାଇଥିଲା । ସୁଜାତା ତା'ର ସହଚରୀ ପୂର୍ଣ୍ଣାକୁ ଡାକି ସେ ଆମ୍ବଗଛ ମୂଳ ବେଦୀକୁ ସଫା କରିବା ପାଇଁ ପଠାଇଲା । ଏ ମଧ୍ୟରେ ସିଦ୍ଧାର୍ଥ ଭିକ୍ଷା ଉଦ୍ଦେଶ୍ୟରେ ବୁଲି ବୁଲି ସେ ଆମ୍ବଗଛ ମୂଳେ ପହଞ୍ଚିଲେ ଏବଂ ସୁଶୀତଳ ଛାଇ ଦେଖି ତା'ର ମୂଳରେ ବସିଗଲେ । ପୂର୍ଣ୍ଣା ଗଛ ମୂଳରେ ଏପରି ଏକ ସୁନ୍ଦର ତେଜସ୍ୱୀ ଯୋଗୀଙ୍କୁ ଦେଖି ସୁଜାତାଙ୍କୁ ଯାଇ କହିଲା ଯେ, ବୃକ୍ଷ ଦେବତା ନିଜେ ଓହ୍ଲାଇ ଆସି ବୃକ୍ଷ ମୂଳରେ ବସିଛନ୍ତି । ସୁଜାତା ଅତି ଆନନ୍ଦରେ ଅଳଙ୍କାର ଓ ପାଟ ଲୁଗା ଆଦି ପିନ୍ଧି ଏକ ସୁନାର ପାତ୍ରରେ ନିଜେ ରନ୍ଧାଥିବା କ୍ଷୀରିକୁ ଧରି ଏବଂ ଆଉ ଏକ ସୁନା ଥାଳିରେ ତାକୁ ଘୋଡାଇ ସେଠାରେ ଯାଇ ପହଞ୍ଚିଲା । ସେ ଦେଖିଲା ଯେ, ଏ ବୃକ୍ଷ ଦେବତା ନୁହନ୍ତି, ଜଣେ ସନ୍ନ୍ୟାସୀ । ତଥାପି ଏପରି ଏକ ଅଭ୍ୟାଗତ ପାଇଥିବାରୁ ନିଜକୁ ଭାଗ୍ୟବତୀ ମନେ କରି ସେ ସିଦ୍ଧାର୍ଥଙ୍କୁ ପ୍ରଣାମପୂର୍ବକ ଯଥାଯୁକ୍ତ ଏହାକୁ ଗ୍ରହଣ କରିବା ପାଇଁ ଅନୁରୋଧ କଲା । ସିଦ୍ଧାର୍ଥ କ୍ଷୁଧାତୁର ଥିଲେ । ତେଣୁ ସେ ସୁଜାତାର କ୍ଷୀରିକୁ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରି ଭୋଜନ କଲେ । ଏପରି ସୁମିଷ୍ଟ ଓ ପୁଷ୍ଟିକର ଖାଦ୍ୟ ତାଙ୍କୁ ଅମୃତ ପରି ଲାଗିଲା ଏବଂ ସେ ତାଙ୍କର ଅବଶ ଦେହରେ ଏକ ନୂତନ ଶକ୍ତି, ନୂତନ ତେଜ ଅନୁଭବ କଲେ । ଭୋଜନ ଦେଇଥିବା ଯୋଗୁ ସେ ସୁଜାତାକୁ କୃତଜ୍ଞତା ଜଣାଇଲେ । "ମୋର ଯେପରି ମନୋବାଞ୍ଛା ପୂର୍ଣ୍ଣ ହେଲା, ତୁମର ମନସ୍କାମନା ସେପରି ପୂର୍ଣ୍ଣ ହେଉ," ଏହା କହି ସିଦ୍ଧାର୍ଥଙ୍କୁ ପ୍ରଣାମ କରି ସୁଜାତା ଚାଲିଗଲା ।

ସିଦ୍ଧାର୍ଥ ସେଠାରୁ ଉଠି ନେରଞ୍ଜରା ନଦୀ କୂଳକୁ ଗଲେ ଏବଂ ସେଠାରେ ସ୍ନାନ କରି ଏ ସୁନାର ଥାଳି ମୋର କ'ଣ ହେବ ବୋଲି କହି ପାଣିକୁ ପକାଇ ଦେଲେ । କଥିତ ଅଛି ଯେ, ଏ ସୁନା ଥାଳି ପାଣିକୁ ପକାଇ ଦେଲାବେଳେ

ସିଦ୍ଧାର୍ଥ କହିଲେ, "ମୁଁ ଯଦି ପ୍ରକୃତରେ ବୁଦ୍ଧ ହେବି, ତା' ହେଲେ ଥାଳୀ ସୁଅର ବିପରୀତ ଦିଗକୁ ଚାଲିଯିବ ।" ସତକୁ ସତ ସୁନାଥାଳୀ ସୁଅର ବିପରୀତ ଦିଗକୁ କିଛିଦୂର ଚାଲିଯାଇ ପାଣିରେ ବୁଡ଼ିଗଲା ଏବଂ ପାତାଳରେ ଗୌତମଙ୍କ ପୂର୍ବରୁ ବୁଦ୍ଧ ହୋଇଥିବା ଯେଉଁ ମହାପୁରୁଷମାନଙ୍କର ଥାଳୀ ଏକାଠି ହୋଇ ରହିଥିଲା, ତା' ଦେହରେ ଯାଇ ବାଜିଲା ଏବଂ ତା'ର ଠନ ଠନ ଶବ୍ଦ ଚଉ ଦିଗକୁ ଶୁଭାଗଲା ।



ସୁଜାତାର କ୍ଷୀର ଗୌତମଙ୍କର ବୁଦ୍ଧ ହେବା ପୂର୍ବର ଶେଷ ଖାଦ୍ୟ । କଥିତ ଅଛି ଯେ, ଏହି ଖାଦ୍ୟବଳରେ ସେ ସାତ ସପ୍ତାହ କାଳ ବୋଧିଦ୍ରୁମ ତଳେ ବସି କଟାଇ ପାରିଥିଲେ ।



# ବୋଧିଦ୍ରୁମର ତଳେ

ସିଦ୍ଧାର୍ଥଙ୍କ ମନ ବେଦନ ସଫଳତାର ଆଶାରେ ଉଜ୍ଜ୍ୱଳ ହୋଇ ଉଠିଲା । ସେ ନୈରଞ୍ଜନା ନଦୀ କୂଳର ପୁଷ୍ପିତ ଶାଳ ବନରେ ଦିନଯାକ ବିହାର କରି ସନ୍ଧ୍ୟା ସମୟକୁ ନିକଟବର୍ତ୍ତୀ ଏକ ଅଶ୍ୱତ୍ଥ ଗଛ ପାଖକୁ ଗଲେ । ବାଟରେ ଶ୍ରୋତ୍ରିୟ ନାମରେ ଏକ ଘାସ କଟାଳୀ ସହିତ ତାଙ୍କର ସାକ୍ଷାତ ହେଲା ଏବଂ ତା' ଠାରୁ ଆଠ ବିଡ଼ା ଘାସ ଭିକ୍ଷାକରି ସେ ଏହି ଅଶ୍ୱତ୍ଥଗଛର ତଳେ ଆଣି ବିଛାଇ ଏକ ଆସନ ପ୍ରସ୍ତୁତ କଲେ । ଅଶ୍ୱତ୍ଥଗଛ ପତ୍ରରେ ପରିପୂର୍ଣ୍ଣ ଥିଲା ଏବଂ ସୁଶୀତଳ ଛାୟା ଦାନ କରୁଥିଲା । ଏହି ଅଶ୍ୱତ୍ଥଗଛ ତଳେ ଘାସର ଆସନରେ ବସି ସିଦ୍ଧାର୍ଥ ପ୍ରତିଜ୍ଞା କଲେ ଯେ, ସେ ବୁଦ୍ଧ ନ ହେବା ଯାଏ ଏ ସ୍ଥାନ ଛାଡ଼ିବେ ନାହିଁ । ତାଙ୍କ ରକ୍ତମାଂସଶୂନ୍ୟ ହାଡ଼-ଚମର ଶରୀର ଖାଲି ପଡ଼ି ରହୁ, ସେଥିରେ କିଛି କ୍ଷତି ନାହିଁ ।

ସିଦ୍ଧାର୍ଥଙ୍କର ଏ ପ୍ରତିଜ୍ଞାରେ ସଂସାରର ମଙ୍ଗଳକାର୍ଯ୍ୟରେ ଲାଗିଥିବା ସମସ୍ତ ଶକ୍ତି ଆନନ୍ଦିତ ହେଲେ । ଦେବତାମାନେ ଆକାଶରେ ଆନନ୍ଦ ଉତ୍ସବ କଲେ । ମାତ୍ର ମାର ବା ପ୍ରଲୋଭନକାରୀ ଶକ୍ତି ଏଥିରେ ଆନନ୍ଦିତ ହେଲା ନାହିଁ । ସେ ସିଦ୍ଧାର୍ଥଙ୍କୁ ପ୍ରଲୋଭନର ଦଳରେ ଟାଣି ନେବା ପାଇଁ ସବୁବେଳେ ତାଙ୍କ ପଛରେ ଲାଗିଥିଲା । ତାଙ୍କର ଏ ଅଟଳ ପ୍ରତିଜ୍ଞା ଓ ଅଚଳ ଆସନ ଦେଖି ସେ ମନେକଲା, ଏଥର ରାଜକୁମାର ସିଦ୍ଧାର୍ଥ ବୁଦ୍ଧ ହେବା ପାଇଁ ତାଙ୍କର ସର୍ବଶ୍ରେଷ୍ଠ ଉଦ୍ୟମ କରୁଛନ୍ତି । ତାଙ୍କୁ ଏଥିରୁ ନିବର୍ତ୍ତାଇବା ପାଇଁ ଶେଷ ଚେଷ୍ଟା ନ କଲେ, ପରିଣାମ ଭଲ ହେବ ନାହିଁ । ସେ ବୁଦ୍ଧ ହେବା ପରେ ଯେଉଁ

ଜ୍ଞାନର ଆଲୋକ ବିସ୍ତାର କରିବେ, ସେଥିରେ ମାରର ଅନ୍ଧକାର ରାଜ୍ୟ ଲୋପ ପାଇଯିବ । ଆଉ ପ୍ରାଣୀମାନେ ତା'ର ପ୍ରଲୋଭନରେ ଭୁଲିବେ ନାହିଁ । କାମ, କ୍ରୋଧ, ହିଂସା, ଦ୍ୱେଷ, ଘୃଣା, ଅଭିମାନ ଆଦି ଯେଉଁ ଅସ୍ତ୍ର ପ୍ରୟୋଗ କରି ସେ ଏ ସଂସାରରେ ତା'ର ରାଜ୍ୟ ବିସ୍ତାର କରିଚି, ସିଦ୍ଧାର୍ଥ କଲ୍ୟାଣ ଓ କରୁଣାର ବାଣୀ ପ୍ରଚାର କରି ସେ ଶାସନକୁ ଲୋପ କରିଦେବେ । ତେଣୁ ସିଦ୍ଧାର୍ଥଙ୍କୁ ବୁଝାଇ ସୁଝାଇ ଏଥିରୁ ନିବର୍ତ୍ତାଇବାକୁ ପଡ଼ିବ; ମାତ୍ର ତାହା ଯଦି ସଫଳ ନ ହୁଏ, ସେତିକିବେଳେ ହିଁ ତାଙ୍କୁ ଶେଷ କରିଦେବାକୁ ପଡ଼ିବ ।

ମାର ସିଦ୍ଧାର୍ଥଙ୍କ ମନ ଭିତରେ ପ୍ରବେଶ କଲା ଏବଂ ଶେଷଥର ପାଇଁ ତାଙ୍କ ମନରେ ଅତୀତର ସ୍ମୃତି, ରାଜପ୍ରାସାଦର ବିଳାସ, ପିତା, ମାତା, ସ୍ତ୍ରୀ, ପୁତ୍ରଙ୍କର ସ୍ମୃତି ଜାଗ୍ରତ କରାଇଲା । ମାତ୍ର ସିଦ୍ଧାର୍ଥଙ୍କର ସଙ୍କଳ୍ପ ସେଥିରେ ଟଳେ ମାତ୍ର ବଦଳିଲା ନାହିଁ । ଏଥିରେ ମାର ପରାସ୍ତ ହୋଇ ସିଦ୍ଧାର୍ଥଙ୍କ ଆଗରେ ଠିଆ ହୋଇ କହିଲା, "କୁମାର, ଏବେ ମଧ୍ୟ ସମୟ ଅଛି, ତୁମେ ନିଜକୁ ଏପରି କଷ୍ଟ ନ ଦେଇ ଚକ୍ରବର୍ତ୍ତୀ ରାଜା ହୋଇ ସମସ୍ତ ସଂସାରକୁ କରଗତ କର ଏବଂ ଲୋକେ ତୁମର ଯଶୋଗାନ କରନ୍ତୁ । ତୁମେ ରାଜ କୁଳରେ ଜନ୍ମ, ତେଣୁ ରାଜଧର୍ମ ତୁମର କର୍ତ୍ତବ୍ୟ ।"

ସିଦ୍ଧାର୍ଥ ଉତ୍ତର ଦେଲେ, "ମାର, ମୋତେ ପୁଣି ତୋ'ଠାରୁ ଧର୍ମୋପଦେଶ ଶିକ୍ଷା କରିବାକୁ ପଡ଼ିବ ? ମୁଁ ମୋର ଧର୍ମ କ'ଣ, କର୍ତ୍ତବ୍ୟ କ'ଣ ଜାଣେ । ତୁ ମୋର ସଙ୍କଳ୍ପରେ ବାଧା ଦେଇ କାହିଁକି ବାରମ୍ବାର ନିରାଶ ହେଉଛୁ ? ମୁଁ ଏହି ଆସନରେ ରହି ବୁଦ୍ଧତ୍ୱ ଲାଭ କରିବି ଏବଂ ମୋର ଲକ୍ଷ୍ୟରେ ମୁଁ ବର୍ତ୍ତମାନ ସବୁଠାରୁ ନିକଟରେ ।"

ଗୌତମଙ୍କର ଏ ଘୋଷଣା ଶୁଣି ମାର ମନରେ ଭୟ ଜାତ ହେଲା । ସେ ତା'ର ଦଳବଳକୁ ଆହ୍ୱାନ କରି ଗୌତମଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା । ମାରର ରାକ୍ଷସ ସୈନ୍ୟମାନେ ନାନା ମାରଣାସ୍ତ୍ରରେ ସଜ୍ଜିତ ହୋଇ ଭୟଙ୍କର ଗର୍ଜ୍ଜନ କରି ସିଦ୍ଧାର୍ଥଙ୍କ ଆଡ଼କୁ ଅଗ୍ରସର ହେଲେ । ଯେଉଁ ଦେବତା-

ମାନେ ଆଗରୁ ଅଣସ୍ୱାସ ଭାବରେ ସିଦ୍ଧାର୍ଥଙ୍କ ପାଖରେ ରହୁଥିଲେ, ସେମାନେ ଭୟରେ ପଳାଇଗଲେ; ମାତ୍ର ଗୌତମ କେବଳ ତାଙ୍କ ଆସନରେ ଦୃଢ଼ ଭାବରେ ବସି ରହିଥିଲେ । ମାରର ନିର୍ଦ୍ଦେଶରେ ଖୁବ୍ ଜୋରରେ ଝଞ୍ଜା ଓ ବତାସ ବହିବାକୁ ଲାଗିଲା । ପ୍ରସ୍ତର ଓ ଆଗ୍ନେୟାସ୍ତ୍ର ବୃଷ୍ଟି ହେବାକୁ ଲାଗିଲା । ମାତ୍ର ସିଦ୍ଧାର୍ଥଙ୍କ ପାଖରେ ପହଞ୍ଚିଲାବେଳେ ଏ ଝଞ୍ଜା ମଳୟରୂପେ ପ୍ରବାହିତ ହେଲା



ଏବଂ ଅଗ୍ନେୟାସ୍ତ୍ରମାନ ଫୁଲମାଳରେ ପରିଣତ ହୋଇଗଲା । ସିଦ୍ଧାର୍ଥଙ୍କ ଶରୀରର ତେଜରେ ଏହି ଭୀଷଣାକୃତ ରାକ୍ଷସମାନେ ତାଙ୍କ ପାଖରେ ପଶିପାରିଲେ ନାହିଁ ଏବଂ ପରାଜୟ ସ୍ୱୀକାର କରି ପଳାଇଗଲେ । ଶେଷକୁ ମାର କନ୍ୟା-ମାନେ ମାରକୁ ସାନ୍ତ୍ୱନା ଦେଇ କହିଲେ ଯେ, ସେମାନଙ୍କର ସୌନ୍ଦର୍ଯ୍ୟ ଓ

ଉଚ୍ଛଳ ଯୌବନ ଆଗରେ କେତେ ଯୋଗୀ ଋଷିଙ୍କର ତପସ୍ୟା ଭଙ୍ଗ ଯାଇଛି; ସିଦ୍ଧାର୍ଥ ବା କ'ଣ ? ମାର ଏହିପରି କହୁଛି ଅଛି ଯେ, ମାର କନ୍ୟାମାନେ ରୂପ ଓ ଯୌବନ ଗର୍ବରେ ସିଦ୍ଧାର୍ଥଙ୍କ ଆଗରେ ପହଞ୍ଚିଲେ। ସିଦ୍ଧାର୍ଥଙ୍କ ତେଜରେ ସେମାନଙ୍କ ରୂପ, ଯୌବନ ମଳିନ ପଡ଼ିଗଲା ଏବଂ ଅକାଳ ବାର୍ଦ୍ଧକ୍ୟ ଅନୁଭବ କରି ସେମାନେ କାନ୍ଦି କାନ୍ଦି ଫେରିଗଲେ । ଏହିପରି ଭାବରେ ମାର ଏବଂ ତା'ର ସୈନ୍ୟମାନେ ସମ୍ପୂର୍ଣ୍ଣ ଭାବରେ ପରାସ୍ତ ହେଲେ ।

ମାରକୁ ପରାସ୍ତ କରି ସିଦ୍ଧାର୍ଥ ଡାହାଣ ହାତରେ ଭୂମିକୁ ସ୍ପର୍ଶ କରି କହିଲେ, "ହେ ପୃଥିବୀ, ଏ ବିଜୟରେ ତୁ କେବଳ ମୋର ସାକ୍ଷୀ ।" ଯେଉଁ ଆସନରେ ବସି ସିଦ୍ଧାର୍ଥ ମାରକୁ ଜୟ କରି ପୃଥିବୀକୁ ସାକ୍ଷୀ କଲେ, ତାହା ଭୂମିସ୍ପର୍ଶ ମୁଦ୍ରା ନାମରେ ପ୍ରସିଦ୍ଧ ଏବଂ ବିଭିନ୍ନ ଯୁଗରେ ପାଷାଣର ଗାତରେ ଗୌତମ ବୁଦ୍ଧଙ୍କର ଏହି ବିଜୟର ପ୍ରତିମୂର୍ତ୍ତି ବହୁସଂଖ୍ୟାରେ ଖୋଦିତ ହୋଇଛି ।

ଗୌତମଙ୍କର ଏହି ବିଜୟରେ ଦେବତାମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେ ଓ ନାଗଲୋକରୁ ଜୟଧ୍ୱନି ଶୁଣାଗଲା ।

ଏହି ଆସନରେ ସ୍ଥିର ରହି ଧ୍ୟାନରତ ଥିବାବେଳେ ରାତିର ପ୍ରଥମ ପ୍ରହରରେ ଗୌତମଙ୍କ ମନରେ ବୁଦ୍ଧତ୍ୱର ପ୍ରଥମ ଝଲକ ଖେଳିଗଲା । ସେ ତାଙ୍କର ସମସ୍ତ ପୂର୍ବଜନ୍ମ ଦେଖିପାରିଲେ । ସୁମେଧ ବ୍ରାହ୍ମଣଠାରୁ ଆରମ୍ଭ କରି ଖ୍ରୁଡିତ ସ୍ୱର୍ଗରେ ରହିବା ପର୍ଯ୍ୟନ୍ତ ସେ କିପରି ବିଭିନ୍ନ ଜନ୍ମରେ ବିଭିନ୍ନ ପ୍ରାଣୀ ଭାବରେ ଏହି ସଂସାରରେ ଜୀବନ କଟାଇଛନ୍ତି, ତାହା ତାଙ୍କ ମନଶ୍ଚକ୍ଷୁରେ ଚଳଚ୍ଚିତ୍ର ପରି ଭାସିଗଲା । ସେ ଦେଖିଲେ ଯେ, ପ୍ରତି ଜନ୍ମରେ ପୁଣ୍ୟ ଅର୍ଜନ କରି ସେହି ସଞ୍ଚିତ ପୁଣ୍ୟବଳରେ ସେ ବୁଦ୍ଧତ୍ୱ ପାଇଁ ଉପଯୁକ୍ତ ହୋଇଛନ୍ତି ।

ରାତିର ଦ୍ୱିତୀୟ ଯାମରେ ସିଦ୍ଧାର୍ଥଙ୍କ ଅକ୍ଷିଆଗରେ ସ୍ୱର୍ଗଲୋକ, ନାଗଲୋକ, ମାରର ରାଜ୍ୟ ଆଦି ସମସ୍ତ ଜଗତ ଦେଖାଗଲା । ଭଲ ଓ ମନ୍ଦ

ସବୁ ପ୍ରକାର କାମ କରୁଥିବା ପ୍ରାଣୀମାନଙ୍କୁ ସେ ଦେଖିପାରିଲେ । ମର୍ତ୍ତ୍ୟରେ ମନୁଷ୍ୟ କର୍ମ କରି କରି ଯାଉଛି । ସେ ଯଦି ଭଲ କାମ କରୁଛି, ତା' ହେଲେ ପରଜନ୍ମରେ ସୁଖ ଭୋଗକରୁଛି । ସେ ଯଦି ମନ୍ଦ କାମ କରୁଛି, ତା'ର ପରିଣାମରେ ଦୁଃଖ ଭୋଗକରୁଛି । ମାତ୍ର ଏ ସୁଖ ଚିରସ୍ଥାୟୀ ନୁହେଁ ଏବଂ ଏ ଦୁଃଖ ବା ପ୍ରାୟଶ୍ଚିତ୍ତ ମଧ୍ୟ ମନୁଷ୍ୟକୁ ଭଲବାଟକୁ ଆଣେ ନାହିଁ । ସ୍ୱର୍ଗରେ ସୁଖ ଭୋଗ କରୁଥିବା ଦେବତା ଓ ନର୍କଯନ୍ତ୍ରଣା ଭୋଗକରୁଥିବା ପ୍ରାଣୀମାନଙ୍କୁ ଦେଖି ତାଙ୍କ ମନରେ ଦୟା ଆସିଲା । ଭଲ କାମ ହେଉ ବା ମନ୍ଦ କାମ ହେଉ, ସଂସାରରେ ପୁଣି ଥରେ ଜନ୍ମଗ୍ରହଣ କରିବା ଯେ ସବୁଠାରୁ ଦୁଃଖମୟ, ସେ ତାହା ଅନୁଭବ କରିପାରିଲେ ।

ଏହି ଦୁଃଖରୁ କିପରି ମୁକ୍ତିଲାଭ କରିବାକୁ ହେବ, ଏହି କଥା ଚିନ୍ତା କରୁ କରୁ ରଜନୀର ତୃତୀୟ ଯାମରେ ତାଙ୍କର ମନରେ ପ୍ରକୃତ ସତ୍ୟର ଉଦୟ ହେଲା ଏବଂ ଏହି ଆଲୋକରେ ତାଙ୍କର ହୃଦୟ ଓ ମନ ଆଲୋକିତ ହୋଇ ଉଠିଲା । ସେ ଦେଖିଲେ ଯେ, ଅତି ସାମାନ୍ୟ, ଅସ୍ଥାୟୀ ଜିନିଷ ପଛରେ ଏ ସଂସାରରେ ସମସ୍ତେ ଦୌଡ଼ୁଛନ୍ତି । ନ ମିଳିଲେ ଦୁଃଖ ହେଉଛି, ମିଳିଲେ ମଧ୍ୟ ପୁଣି କାମନା ବଢ଼ିଚାଲିଛି ଏବଂ ତା' ସହିତ ଦୁଃଖ ମଧ୍ୟ ବଢ଼ିଚାଲିଛି । କାମନା ସବୁବେଳେ ଅପୂର୍ଣ୍ଣ ରହିଯାଉଥିବାରୁ ପୁଣି ଏ ସଂସାରରେ ଜନ୍ମଗ୍ରହଣ କରିବା ପାଇଁ ଇଚ୍ଛା ହେଉଛି । ସଂସାରରେ ଜନ୍ମ ହେବାକ୍ଷଣି ପୁଣି ନୂଆ ନୂଆ କାମନା ଜାତ ହେଉଛି । ଏହିପରି ଭାବରେ ମନୁଷ୍ୟ ଦୁଃଖର ଏକ ଘୂର୍ଣ୍ଣିବାୟୁ ଭିତରେ ପଡ଼ିଛି ; ଯେପରି ଜଣାଯାଉଛି, ଏହାର ଆଦ୍ୟ ନାହିଁ କି ଶେଷ ନାହିଁ । ଏହିପରି ଭାବରେ ସେ ଦେଖିଲେ ଯେ, କାମନା ହିଁ ପ୍ରକୃତ ଦୁଃଖର କାରଣ । କାମନାକୁ କମାଇ କମାଇ କ୍ରମେ ତା'ର ଲୋପ କରିଦେଇ ପାରିଲେ ଦୁଃଖର ଲୋପ ହୋଇଯିବ । ତା'ହେଲେ ପୁନର୍ଜନ୍ମ ହେବ ନାହିଁ ଏବଂ ମୋକ୍ଷ ବା ନିର୍ବାଣର ବାଟ ସମ୍ଭବ ହେବ । କିପରି ଭାବରେ ଜୀବନ ଯାପନ କଲେ ଏହା ସମ୍ଭବ ହେବ, ତା' ମଧ୍ୟ ସେ ଅନୁଭବ କରି ପାରିଲେ । ଏହି ଜୀବନଯାପନ ପ୍ରଣାଳୀକୁ ଅଷ୍ଟାଙ୍ଗିକ ମାର୍ଗ ବୋଲି ବୌଦ୍ଧ ଧର୍ମରେ କୁହାଯାଏ ।

ଯେତେବେଳେ ଗୌତମ ଏହି ନୂତନ ଜ୍ଞାନ ବା ସତ୍ୟ ଲାଭ କଲେ, ତାଙ୍କ ମୁଖମଣ୍ଡଳରୁ ଉଜ୍ଜ୍ୱଳ ଜ୍ୟୋତି ପ୍ରକାଶ ପାଇଲା । ଚତୁର୍ଦ୍ଦିଗରେ ତାଙ୍କର ଜୟଧ୍ୱନି ଶୁଣାଗଲା । ସେ ସେହି ସମୟଠାରୁ ଗୌତମ ବୁଦ୍ଧ ନାମରେ ଜଗତରେ ପରିଚିତ ହେଲେ ଏବଂ ଯେଉଁ ଅଶ୍ୱତ୍ଥ ବୃକ୍ଷମୂଳରେ ସେ ଜ୍ଞାନଲାଭ କଲେ, ତାହା ବୋଧିଦ୍ରୁମ ନାମରେ ପରିଚିତ ହେଲା ।

ଏବେ ବୁଦ୍ଧଗୟାଠାରେ ଥିବା ଜରାଜୀର୍ଣ୍ଣ ଅଶ୍ୱତ୍ଥ ଗଛକୁ ଏହି ବୋଧିଦ୍ରୁମ ବୋଲି ଧର୍ମଜ ବୌଦ୍ଧମାନେ ବିଶ୍ୱାସ କରନ୍ତି । ମାତ୍ର ଏହା ସେ ବୋଧିଦ୍ରୁମ ନୁହେଁ; ହୁଏତ ତା'ର ବଂଶଧର ହୋଇପାରେ ବୋଲି ଐତିହାସିକମାନଙ୍କର ମତ । କିମ୍ବଦନ୍ତୀ ଅଛି ଯେ, ବୋଧିଦ୍ରୁମର ଡାଳ ନେଇ ଅଶୋକଙ୍କ ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରା ସିଂହଳର ଅନୁରାଧାପୁରଠାରେ ରୋପଣ କରିଥିଲେ । ଅନୁରାଧାପୁରର ଏହି ବୋଧିଦ୍ରୁମରୁ ଗୋଟିଏ ଡ଼ାଳ ଆଣି ସାରନାଥର ମୂଳଗନ୍ଧକୁଟି ବିହାରଠାରେ ଏବେ ରୋପଣ କରାଯାଇଛି ଏବଂ ଏ ନୂଆ ଗଛଟି ଏଠାରେ ଖୁବ୍ ସୁନ୍ଦର ଭାବରେ ବଢୁଛି । ଯେପରି ଜଣାପଡୁଛି, ନିଜର ପିତୃଭୂମିକୁ ଫେରି ଆସିଥିବାରୁ ମନର ଆନନ୍ଦରେ ଖୁବ୍ ହୃଷ୍ଟପୁଷ୍ଟ ଭାବରେ ଏ ବୃକ୍ଷଟି ବଢିବାରେ ଲାଗିଛି ।



# ଉତ୍କଳର ଦୁଇଜଣ ବଣିକ

ତତ୍ତ୍ୱ ବା ମହାଜ୍ଞାନ ଲାଭ କଲା ପରେ ଗୌତମ ବହୁକାଳ ମନ-ସୁଖରେ ବୋଧିଦ୍ରୁମ ଓ ତା'ର ପାର୍ଶ୍ୱବର୍ତ୍ତୀ ବୃକ୍ଷମାନଙ୍କ ତଳେ କଟାଇଲେ । ଏହି ବୃକ୍ଷମାନଙ୍କ ମଧ୍ୟରେ ମୁଚଲିନ୍ଦ ଓ ରାଜାୟତନ ବୃକ୍ଷ ପ୍ରଧାନ । ସେ ମୁଚଲିନ୍ଦ ବୃକ୍ଷମୂଳରେ ବସିଥିବା ବେଳେ ହଠାତ୍ ଏକ ପ୍ରବଳ ଝଡ଼ ଓ ବୃଷ୍ଟି ହେଲା । ଏହି ଝଡ଼ରେ ବହୁ ଗଛ ଉପୁଡ଼ିଗଲା ଓ ଘନଘୋର ଅବିରତ ବର୍ଷା ହେଲା । ଏହି ସମୟରେ ନାଗରାଜ ତାଙ୍କର ବିସ୍ତୃତ ଫଣାର ଆଢୁଆଳରେ ସିଦ୍ଧାର୍ଥଙ୍କୁ ରକ୍ଷା କରିଥିଲେ ବୋଲି ବର୍ଣ୍ଣିତ ଅଛି ।

ସୁଜାତାଠାରୁ କ୍ଷୀର ଖାଇ ବୋଧିଦ୍ରୁମ ତଳେ ବସିବାଠାରୁ ଅଣଚାଶ ଦିନ କାଳ ସିଦ୍ଧାର୍ଥ ଉପବାସ ରହିଲେ ଏବଂ ଏହି ସମୟରେ ସେ ନୂଆ ହୋଇ ଲବ୍ଧ କରିଥିବା ତାଙ୍କର ଜ୍ଞାନ ସମ୍ପର୍କରେ ମନ ମଧ୍ୟରେ ଆଲୋଚନା କରିଥିଲେ । ମାର ତାଙ୍କ ନିକଟରେ ପୁଣି ଥରେ ଆବିର୍ଭୂତ ହୋଇଥିଲା ଏବଂ ଏ ସଂସାର ଛାଡ଼ି ନିର୍ବାଣ ଲାଭ କରିବା ପାଇଁ ତାଙ୍କୁ ପ୍ରବର୍ତ୍ତାଇଥିଲା । ନିଜେ ମୋକ୍ଷ ବା ମୁକ୍ତିର ଜ୍ଞାନ ଲାଭ କରିବା ପରେ ଏ ସଂସାରରେ ପୁଣି ରହିବାର ତାଙ୍କର ପ୍ରୟୋଜନ ନାହିଁ ବୋଲି ସେ ଯୁକ୍ତି କରିଥିଲା । ମାତ୍ର ବୁଦ୍ଧ ହେବା ପରେ ଗୌତମ ସ୍ଥିର କଲେ ଯେ, ତାଙ୍କର ଏ ମୋକ୍ଷ କେବଳ ନିଜ ପାଇଁ ନୁହେଁ, ଏ ବୁଦ୍ଧତ୍ୱ ସ୍ୱାର୍ଥପରତା ନୁହେଁ । ସେ ଯେଉଁ ଜ୍ଞାନ ଲାଭ କରିଛନ୍ତି, ତାହା ଭଲ ରୂପେ ସଂସାରରେ ପ୍ରଚାର ନ କରିବା ପୂର୍ବରୁ କେବେ ନିର୍ବାଣ ବା ମୁକ୍ତିର କାମନା କରିବେ ନାହିଁ ।

ଏହିପରି ଅନ୍ୱେଷଣ ଦିନ କଟାଇବା ପରେ ରାଜାୟତନ ବୃକ୍ଷମୂଳରେ ଗୌତମ ବୁଦ୍ଧ ଅବସ୍ଥାନ କରୁଥିଲେ । ଏହି ସମୟରେ ତପସ୍ସୁ ଓ ଭଲ୍ଲିକ ନାମରେ ଦୁଇଜଣ ବଣିକ ସେହି ବାଟରେ ଯାଉଥିଲେ । ତପସ୍ସୁ ଓ ଭଲ୍ଲିକ ଉତ୍କଳ ଦେଶର ବଣିକ ଥିଲେ ଏବଂ ପାଞ୍ଚ ଶହ ବଳଦଗାଡ଼ିରେ ମାଲ ବୋଝାଇ କରି ସେମାନେ ଉତ୍ତର ଭାରତକୁ ବାଣିଜ୍ୟ କରିବା ପାଇଁ ଯାଉଥିଲେ । ସେତେବେଳେ ଉତ୍କଳ ଦେଶ ବ୍ୟବସାୟବାଣିଜ୍ୟ ପାଇଁ ପ୍ରସିଦ୍ଧ ଥିଲା ଏବଂ ତାମ୍ରଲିପ୍ତ ଥିଲା ଉତ୍କଳର ପ୍ରଧାନ ବନ୍ଦର । ଉତ୍କଳୀୟ ବଣିକମାନେ ସାଗର ଓ ସ୍ଥଳ ପଥରେ ଦେଶବିଦେଶରେ ଯାଇ ବାଣିଜ୍ୟ କରୁଥିଲେ ।

ଏହି ସମୟରେ ଜଣେ ଦେବପୁରୁଷ ମନୁଷ୍ୟ ବେଶରେ ଆସି ତପସ୍ସୁ ଓ ଭଲ୍ଲିକଙ୍କୁ ଯାଇ କହିଲେ, "ହେ ବଣିକପୁତ୍ର, ଏଠାରୁ ଅଳ୍ପ ଦୂରରେ ବୁଦ୍ଧପଦ ଲାଭ କରି ଭଗବାନ ଗୌତମ ରାଜାୟତନ ବୃକ୍ଷ ତଳେ ବିହାର କରୁଛନ୍ତି । ଯାଅ, ସୁମିଷ୍ଟ ଭୋଜନ ଦେଇ ତାଙ୍କୁ ତୃପ୍ତ କର ।" ତପସ୍ସୁ ଓ ଭଲ୍ଲିକ ସେଠାକୁ ଯାଇ ବୃକ୍ଷମୂଳରେ ଦେବୋପମ ସନ୍ନ୍ୟାସୀଙ୍କୁ ଦେଖି ତାଙ୍କ ପାଦତଳେ ପ୍ରଣିପାତ କଲେ ଏବଂ ସାଙ୍ଗରେ ଆଣିଥିବା ସୁମିଷ୍ଟ ଖାଦ୍ୟ (ପିଠା ଓ ମହୁ) ତାଙ୍କୁ ଖାଇବାକୁ ଦେଲେ । ବୁଦ୍ଧ ବିନା ପାତ୍ରରେ କାହାରିଠାରୁ ଖାଦ୍ୟ ଗ୍ରହଣ କରନ୍ତି ନାହିଁ ବୋଲି ଜାଣି ଚାରି ଦିଗ୍‌ପାଳ ସେଠାରେ ଏକ ପଥରର ଭିକ୍ଷାପାତ୍ର ରଖି ଦେଇଥିଲେ । ଏହି ଭିକ୍ଷାପାତ୍ରରେ ବୁଦ୍ଧ ବଣିକ-ମାନଙ୍କ ପ୍ରଦତ୍ତ ଖାଦ୍ୟ ଗ୍ରହଣ କରି ତାଙ୍କର ଅନ୍ୱେଷଣ ଦିନର ଉପବାସ ଭଙ୍ଗ କଲେ । ସେ ତାଙ୍କର ହାତ ଓ ପାତ୍ର ଧୋଇ ସାରିବା ପରେ ତପସ୍ସୁ ଓ ଭଲ୍ଲିକ ତାଙ୍କୁ ପୁଣି ଥରେ ପ୍ରଣିପାତ କରି କହିଲେ, "ଭଗବାନ, ଆମେ ଆପଣଙ୍କଠାରେ ଶରଣ ନେଉଛୁ ଏବଂ ଧର୍ମକୁ ସ୍ୱୀକାର କରୁଛୁ । ଭଗବାନ ଆମକୁ ଉପାସକ ରୂପେ ଗ୍ରହଣ କରନ୍ତୁ; ଯେପରି ଆ ଜୀବନ ସାରା ଆମେ ଭଗବାନଙ୍କର ଶରଣାଗତ ସେବକରୂପେ ରହିବୁ ।" ବୁଦ୍ଧ ଏମାନଙ୍କୁ ଆଶୀର୍ବାଦ କଲେ ଏବଂ ଏମାନେ ହେଲେ ପୃଥିବୀର ସର୍ବପ୍ରଥମ ବୌଦ୍ଧ ବା ବୁଦ୍ଧଙ୍କର ଉପାସକ ।

ଆଜି ଉତ୍କଳରେ ଅଳ୍ପ କେତେ ଜଣ ବୌଦ୍ଧ ଅଛନ୍ତି । ମାତ୍ର ଦିନ ଥିଲା ଯେତେବେଳେ ଉତ୍କଳ ଥିଲା ବୌଦ୍ଧଧର୍ମର ଏକ ପ୍ରଧାନ ପୀଠସ୍ଥଳୀ । ଏହି ଉତ୍କଳର ଦୁଇ ଜଣ ବଣିକ ପ୍ରଥମେ ଗୌତମ ବୁଦ୍ଧଙ୍କର ବୁଦ୍ଧତ୍ୱକୁ ସ୍ୱୀକାର କରି ତାଙ୍କୁ ସମ୍ମାନ ଦେଇଥିଲେ ଏବଂ ପରେ ତାଙ୍କ ଧର୍ମରେ ଦୀକ୍ଷିତ ହୋଇ ପୃଥିବୀରେ ଏହି ମହାନ ଧର୍ମର ମୂଳଭିତ୍ତି ସ୍ଥାପନରେ ସାହାଯ୍ୟ କରିଥିଲେ ।



# ଧର୍ମଚକ୍ର ପ୍ରବର୍ତ୍ତନ

ଗୌତମ ତାଙ୍କ ଜୀବନରେ ଦୁଇଟି ପ୍ରଧାନ ସଂକଳ୍ପ କରିଥିଲେ । ତାଙ୍କର ପ୍ରଧାନ ସଂକଳ୍ପ ଥିଲା, ସେ ବୁଦ୍ଧ ହେବେ । ବୁଦ୍ଧ ହେବା ପରେ ସେ ତାଙ୍କର ଦ୍ୱିତୀୟ ପ୍ରଧାନ ସଂକଳ୍ପ କରିଥିଲେ । ଉରୁବେଲା ପ୍ରଦେଶର ଶାଳ ବନରେ ବିଚରଣ କରୁଥିବାବେଳେ ସେ ଏହି ସଂକଳ୍ପ କରି କହିଥିଲେ— "ସମସ୍ତଙ୍କର ଦୁଃଖଭାର ମୁଁ ମୋର ସ୍କନ୍ଧରେ ବହନ କରିବି । ମୁଁ ସଂସାରର ସମସ୍ତ ପ୍ରାଣୀଙ୍କୁ ଜନ୍ମ, ଜରା, ରୋଗ ଓ ମୃତ୍ୟୁର ଦୁଃଖରୁ ପରିତ୍ରାଣ କରିବି । ଯେଉଁ ଧର୍ମ ବା ମହାଜ୍ଞାନ ଲୁପ୍ତ ହୋଇପଡ଼ିଛି, ମୁଁ ତା'ର ପ୍ରଚାର କରିବି ଏବଂ ଯେଉଁ ସଂସାରରୂପ ସ୍ରୋତକୁ ଅତିକ୍ରମ କରିବା କଷ୍ଟକର, ମୁଁ ଏହି ଧର୍ମ-ରୂପ ନୌକାକୁ ବାହି ସେ ସ୍ରୋତରୁ ପ୍ରାଣୀମାନଙ୍କୁ ତ୍ରାଣ କରିବି । ମୋର ଏ ସଂକଳ୍ପ ଶୁଭ ସଂକଳ୍ପ । ଏଥିରୁ ମୁଁ ବିଚ୍ୟୁତ ହେବି ନାହିଁ । ଏ କାର୍ଯ୍ୟରେ ମୁଁ ଶଙ୍କିତ ବା ଭସ୍ମୀଭୂତ ହେବି ନାହିଁ ।"

ଏହି ପ୍ରତିଜ୍ଞା କରି ପ୍ରଥମେ ସେ କେଉଁଠି ଧର୍ମ ପ୍ରଚାର କରିବେ, ତାହା ମନ ମଧ୍ୟରେ ବିଚାର କଲେ । ଆଲାରକାଲାମଙ୍କ ପାଖରୁ ସନ୍ନ୍ୟାସୀ ଜୀବନ ସମ୍ପର୍କରେ ସେ ଆଗରୁ ବହୁ ଉପଦେଶ ଲାଭ କରିଥିଲେ ଏବଂ ଧର୍ମଶାସ୍ତ୍ର ଚର୍ଚ୍ଚା କରିଥିଲେ । ପ୍ରଥମେ ସେ ତାଙ୍କର ନିକଟରେ ତାଙ୍କ ନୂତନ ଜ୍ଞାନ ପ୍ରଚାର କରିବେ ବୋଲି ମନେ କଲେ । ମାତ୍ର ସେ ଜାଣିପାରିଲେ ଯେ, ଆଲାରକାଲାମ ମରିଗଲେଣି । ତେଣୁ ସେ ସ୍ଥିର କଲେ ଯେ, ଯେଉଁ ଋଦ୍ରକ ରାମପୁତ୍ରଙ୍କଠାରୁ ସେ ଯୋଗ ଶିକ୍ଷା କରିଥିଲେ, ତାଙ୍କୁ ସେ ଧର୍ମ ଉପଦେଶ ଦେବେ । ମାତ୍ର ପରେ ସେ ଜାଣି-

ପାରିଲେ ସେ ଉଦ୍ଭଟ ସ୍ୱପ୍ନପୂର୍ଣ୍ଣ ଆଉ ଅବଚେତ ନାହାନ୍ତି । ଶେଷକୁ ଶରୀରକୁ କଷ୍ଟ ଦେଇ ନୈରଞ୍ଜନା ନଦୀକୂଳରେ ସେ ତପସ୍ୟା କରୁଥିବାବେଳେ ତାଙ୍କୁ ଯେଉଁ ପାଞ୍ଚ ଜଣ ସନ୍ନ୍ୟାସୀ ସାହାଯ୍ୟ କରିଥିଲେ, ସେମାନଙ୍କ କଥା ତାଙ୍କର ମନେ ପଡ଼ିଲା । ସେ ଧ୍ୟାନବଳରେ ଜାଣିପାରିଲେ ଯେ, ଏହି ପାଞ୍ଚ ଜଣ ସନ୍ନ୍ୟାସୀ ବାରାଣସୀର ନିକଟରେ ଥିବା ଋଷିପତ୍ତନର ମୃଗଦାବଠାରେ ତପସ୍ୟା କରୁଛନ୍ତି । ସେଠାକୁ ଯାଇ ସେହିମାନଙ୍କ ନିକଟରେ ସେ ପ୍ରଥମେ ଧର୍ମ ପ୍ରଚାର କରିବେ ବୋଲି ସ୍ଥିର କଲେ ।

ସେଠାରୁ ଋଷିପତ୍ତନ ଅଠସ୍ତରି କୋଶ ଦୂର ଥିଲା । ଗଙ୍ଗାର କୂଳେ କୂଳେ ଯାଇ ବୁଦ୍ଧ ଋଷିପତ୍ତନରେ ପହଞ୍ଚିଲେ । ପାଞ୍ଚଜଣ ଭିକ୍ଷୁ ବୁଦ୍ଧଙ୍କୁ ଦୂରରୁ ଆସୁଥିବାର ଦେଖିପାରି, ନିଜ ମଧ୍ୟରେ କଥାବାର୍ତ୍ତା ହେଲେ, "ଦେଖ ଭାଇ, ଶ୍ରମଣ ଗୌତମ ଆସୁଛି । ଏ ନିଜ ସାଧନାରୁ ଭ୍ରଷ୍ଟ ହୋଇ ବିଳାସବାସନାରେ ଲିପ୍ତ । ଏ ଆସିଲେ ଆମେ ଆସନରୁ ଉଠିବା ନାହିଁ କି ସମ୍ମାନ ଦେଖାଇବା ନାହିଁ ।"

କିନ୍ତୁ ବୁଦ୍ଧ ଏମାନଙ୍କ ପାଖରେ ପହଞ୍ଚିବାକ୍ଷଣି ଏମାନେ ଆଉ ପ୍ରତିଜ୍ଞା ରକ୍ଷା କରି ପାରିଲେ ନାହିଁ । ଏମାନେ ତାଙ୍କ ପାଖକୁ ଯାଇ ତାଙ୍କର ପାତ୍ର, ଚୀବର ବା ସନ୍ନ୍ୟାସୀର ବସ୍ତ୍ର ତାଙ୍କଠାରୁ ଆଣି ତାଙ୍କ ପାଇଁ ଆସନ ବିଛାଇ ଦେଲେ । ଗୋଡ଼ ଧୋଇବା ପାଇଁ ପାଣି ଆଣିଦେଲେ । ଗୌତମ ଗୋଡ଼ ଧୋଇ ଆସନରେ ବସିବା ପରେ, ଭିକ୍ଷୁମାନେ ତାଙ୍କର କୁଶଳ ଜିଜ୍ଞାସା କଲେ । ଯେତେବେଳେ ଶୁଣିଲେ ଯେ ସେ ବୁଦ୍ଧତ୍ୱ ବା ଜ୍ଞାନ ଲାଭ କରିଛନ୍ତି, ତାଙ୍କୁ ବିଶ୍ୱାସ କଲେ ନାହିଁ । କଠୋର ସାଧନା ଛାଡ଼ି ଦେଇ ସେ ବିଳାସୀ ହୋଇ ଗଲେଣି ବୋଲି ସେମାନେ ଅଭିଯୋଗ କଲେ । ବୁଦ୍ଧ କହିଲେ, ସେ ସାଧନା-ଭ୍ରଷ୍ଟ ବା ବିଳାସୀ ନୁହନ୍ତି ଏବଂ ସେ ପ୍ରକୃତ ଜ୍ଞାନ ଲାଭ କରିଛନ୍ତି । ଏହି କଥା ବୁଝାଇବାକୁ ତାଙ୍କୁ ବହୁତ ସମୟ ଲାଗିଲା । ଶେଷକୁ ଭିକ୍ଷୁମାନେ ତାଙ୍କଠାରୁ ଧର୍ମ ଉପଦେଶ ଗ୍ରହଣ କରିବା ପାଇଁ ରାଜି ହେଲେ ।

ଧୀର ଗମ୍ଭୀର ସ୍ୱରରେ ଗୌତମ ବୁଦ୍ଧ ତାଙ୍କର ଧର୍ମ ଉପଦେଶ ଆରମ୍ଭ କଲେ. "ଭିକ୍ଷୁମାନେ, ସନ୍ନ୍ୟାସୀର ପକ୍ଷରେ ଦୁଇଟି ଅତଥ୍ୟ କଥା ସବୁବେଳେ ପରିତ୍ୟାଗ କରିବା ଉଚିତ । ଗୋଟିଏ ହେଉଛି ଭୋଗବିଳାସର ଜୀବନ । ହୀନ ଅନାର୍ଯ୍ୟ ଶ୍ରେଣୀର ଲୋକମାନେ ଏହିଭଳି ଜୀବନ ଯାପନ କରନ୍ତି । ଅନ୍ୟଟି ହେଉଛି ଶରୀରକୁ ସବୁବେଳେ କଷ୍ଟ ଦେଇ ସାଧନା କରିବା । ଏ ଜୀବନ ଦୁଃଖପୂର୍ଣ୍ଣ । ହୀନ ଓ ଅନାର୍ଯ୍ୟ ଶ୍ରେଣୀର ଲୋକମାନେ ମଧ୍ୟ ଏପରି ଜୀବନ ଯାପନ କରନ୍ତି । ଏହି ଦୁଇ ଅତଥ୍ୟକୁ ଛାଡି ସେପରି ଭାବରେ ଜୀବନ କଟାଇଲେ ପ୍ରକୃତ ଶାନ୍ତି ମିଳିବ, ଆଖିର ପରଦା ଖୋଲିଯିବ, ଜ୍ଞାନର ଆଲୋକ ଦେଖାଯିବ. ସେହି ମାର୍ଗ ହେଉଛି ପ୍ରକୃତ ମୋକ୍ଷ ବା ନିର୍ବାଣର ମାର୍ଗ । ମୁଁ ସେହି ମାର୍ଗକୁ ଯାଇ ଖୋଜି ବାହାର କରିଛି । ଏହା ହେଉଛି ମଧ୍ୟମ ମାର୍ଗ ।

"ଏହି ମଧ୍ୟମ ମାର୍ଗରେ ଚାଲିବାକୁ ହେଲେ ଆଠଟି ବିଷୟ ପ୍ରତି ଦୃଷ୍ଟି ଦେବାକୁ ହେବ । ଆଠଟି ବିଷୟ ହେଉଛି—ସଦ୍‌ଭାବନା, ସତ୍ ସଂକଳ୍ପ, ସତ୍ ବାକ୍ୟ, ସତ୍ କାର୍ଯ୍ୟ, ସତ୍ ଜୀବିକା, ସତ୍ ପରିଶ୍ରମ, ସତ୍ ସ୍ମୃତି ଓ ସତ୍ ସମାଧି । ଏହାକୁ ଅଷ୍ଟାଙ୍ଗିକ ମାର୍ଗ ବୋଲି କୁହାଯାଏ ।

"ମାତ୍ର ଏ ବାଟରେ ଚାଲିବାକୁ ହେଲେ ପ୍ରଥମେ ଏ ସଂସାର କ'ଣ, ସେ ସମ୍ପର୍କରେ କିଛି ଜ୍ଞାନ ହେବା ଆବଶ୍ୟକ । ଏ ସଂସାର ଦୁଃଖମୟ । ଏଥିରେ ଜନ୍ମ ହେଉଛି ଦୁଃଖ —ଜରା ଦୁଃଖ, ମରଣ ଦୁଃଖ, ଅପ୍ରିୟ ବସ୍ତୁ ଲାଭ କରିବା ଦୁଃଖ, ପ୍ରିୟ ଲୋକର ବିଚ୍ଛେଦ ଦୁଃଖ, କିଛି ପାଇବାକୁ ଇଚ୍ଛାକରି ନ ପାଇବା ଦୁଃଖ । ଏଥିରେ କୌଣସି ବସ୍ତୁ ସ୍ଥାୟୀ ନୁହେଁ, ସମସ୍ତ ଅସ୍ଥାୟୀ । ଏହି ଦୁଃଖମୟ ସଂସାର ହେଉଛି ପ୍ରଥମ ସତ୍ୟ ।

"ମାତ୍ର ଏ ଦୁଃଖ କାହିଁକି ହେଉଛି ? ସୁଖରେ ରହିବାର କାମନା ହେଉଛି; ସମ୍ପତ୍ତି ଅର୍ଜନ କରି ଭୋଗବିଳାସ କରିବାର କାମନା ହେଉଛି । କାମନା ଅପୂର୍ଣ୍ଣ ରହିଲେ ପ୍ରାଣୀ ସଂସାରରେ ଜନ୍ମ ହେଉଛି । ଜନ୍ମ ହେଲେ ପୁଣି ଭୋଗକାମନା ହେଉଛି । ତେଣୁ ଏହି କାମନା ହେଉଛି ପ୍ରକୃତ ଦୁଃଖର କାରଣ । ଏହା ଦ୍ୱିତୀୟ ପ୍ରଧାନ ସତ୍ୟ ।

"ଦୁଃଖର କାରଣ କାମନା ବୋଲି ଜାଣିଲେ, କାମନାର ବିନାଶ କରିବାକୁ ହେବ । କାମନାର ବିନାଶ ହେଲେ ଦୁଃଖର ଲୋପ ହୋଇ ପାରିବ ଓ ଜ୍ଞାନର ଉଦୟ ହେବ । ଏହା ହେଉଛି ତୃତୀୟ ପ୍ରଧାନ ସତ୍ୟ ।

"ମାତ୍ର ଏହି କାମନାର କିପରି ବିନାଶ ହୋଇ ପାରିବ ? ଜୀବନର ଆଠଟି ବ୍ରତ ଅବଲମ୍ବନ କରି ଚାଲିଲେ ଏହା ହୋଇପାରିବ । ଏହି ଆଠଟି ବ୍ରତର ନାମ ହେଉଛି ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ । ଏହା ହେଉଛି ଚତୁର୍ଥ ପ୍ରଧାନ ସତ୍ୟ ।

"ଏହି ଅଷ୍ଟାଙ୍ଗିକ ମାର୍ଗର ପ୍ରଥମ ହେଲା ସତ୍ ଭାବନା । ଏହାର ଅର୍ଥ ହେଉଛି, କେଉଁ ବସ୍ତୁ ସ୍ଥାୟୀ ଏବଂ କେଉଁ ଅସ୍ଥାୟୀ ବା ପରିବର୍ତ୍ତନଶୀଳ, ତା'ର ଧାରଣା ସର୍ବପ୍ରଥମେ ଆବଶ୍ୟକ । ନିଜକୁ ବଡ ମନେକରି ଅନ୍ୟମାନଙ୍କୁ ଶ୍ରେଷ୍ଠ ବୋଲି ଭାବିବା ଠିକ ନୁହେ । ଅନ୍ୟମାନଙ୍କଠାରୁ ନିଜକୁ ଅଲଗା କରି ଦେଖିବା ଉଚିତ ନୁହେ । ନିଜ ଜୀବନ ଏ ସଂସାରର ସମଗ୍ର ଜୀବନର ଗୋଟିଏ ଅଙ୍ଗ ।

"ସତ୍ ସଂକଳ୍ପର ଅର୍ଥ ହେଉଛି, ଆତ୍ମସଂଯମ ବଳରେ ପ୍ରକୃତ ଜ୍ଞାନ ଲାଭ କରିବା । ଲକ୍ଷ୍ୟ ଠିକ୍ ଥିଲେ, ଉପାୟ ଠିକ୍ ଥିବା ଉଚିତ । ଧନ ପାଇବାକୁ ଇଚ୍ଛା କରି କେହି କେବେ ବାଜୁଙ୍ଗା ଖେଳେ ନାହିଁ ।

"ସତ୍ କଥା ବା ସତ୍ ଭାଷଣର ଅର୍ଥ ହେଉଛି, କଥାରେ ସଂଯତ ନ ରହିଲେ ମନର ସଂକଳ୍ପ ରହିବ ନାହିଁ, ସତ କଥା କହିବାକୁ ହେବ । ମିଥ୍ୟା ବା ପରର ନିନ୍ଦା ପରିତ୍ୟାଗ କରିବାକୁ ହେବ ।

"ସତ୍ କାର୍ଯ୍ୟର ଅର୍ଥ ହେଉଛି, ସମୂହର କଲ୍ୟାଣ ପାଇଁ କାର୍ଯ୍ୟ କରିବା । ଏଥିପାଇଁ ନିଜେ କିଛି ଲାଭ ବା ପୁରସ୍କାର ଆଶା ରଖିବା ଠିକ୍ ନୁହେଁ ।

"ସତ୍ ଜୀବିକାର ଅର୍ଥ ହେଉଛି, ସାଧୁ ଉପାୟରେ ନିଜର ଜୀବିକା ଅର୍ଜନ କରିବା । ଅନ୍ୟକୁ ଠକି ବା ଶୋଷଣ କରି ନିଜର ଜୀବିକା ଅର୍ଜନ କରିବା ଠିକ୍ ନୁହେଁ ।

"ସଦ୍‌ବ୍ୟାମ ବା ସତ୍ ପରିଶ୍ରମର ଅର୍ଥ ହେଉଛି, ନିଜ ଉଦ୍ଦେଶ୍ୟ ରକ୍ଷି କାମ କରିବା । ନିଜର ଲକ୍ଷ୍ୟ କ'ଣ, କେଉଁପରି ଭାବରେ କାର୍ଯ୍ୟ କଲେ ଏ ଲକ୍ଷ୍ୟ ହାସଲ ହୋଇ ପାରିବ, ସେହିପରି ଉଦ୍ୟମ କରିବା । ଯେତେବେଳେ ସୃଷ୍ଟି ତା'ର ବଳରେ ଧାନ ବୃକ୍ଷ କରିବାକୁ ବାହାରେ, ସେ କେବେ ଶୀତ-ଦିନେ ବିଲକୁ ହଳ କରି ବିହନ ବୁଣେ ନାହିଁ ।

"ସତ୍ ସ୍ମୃତି ହେଉଛି, ମନରୁ ଅହଂକାର ବା ଅହଂ ଭାବ ଦୂର କରିବା ଏବଂ ଲାଭ, କ୍ଷତି, ସୁଖ, ଦୁଃଖ ବୋଲି ଯାହାକୁ ବୁଝାଯାଏ, ସେଥିରେ ବିଚଳିତ ନ ହେବା ।

"ସତ୍ ସମାଧିର ଅର୍ଥ ହେଉଛି, ସମସ୍ତ ପ୍ରକାର ସ୍ୱାର୍ଥ କାମନାରୁ ଦୂରରେ ରହି ଚିତ୍ତବୃତ୍ତିକୁ ସ୍ଥିର ରଖିବା ବା ପ୍ରକୃତ ଜ୍ଞାନ ବା ପ୍ରକୃତ ଶାନ୍ତି ଅନୁଭବ କରିବା ।"

ବୁଦ୍ଧଙ୍କର ଉପଦେଶ ଶେଷ ହେବା ପରେ ପରେ ଏହି ପାଞ୍ଚଜଣ ଭିକ୍ଷୁଙ୍କ ମଧ୍ୟରୁ କୌଣ୍ଡିନ୍ୟ ପ୍ରଥମେ ଜ୍ଞାନ ଲାଭ କଲେ ଏବଂ ସେ ହେଲେ ବୁଦ୍ଧଙ୍କର ପ୍ରଥମ ଶିଷ୍ୟ । ତାଙ୍କ ପରେ ଅନ୍ୟ ଚାରିଜଣ ବପ୍ପ, ଭଦ୍ଦିୟ, ମହାନାମ ଓ ଅଶ୍ୱଜିତ୍ ବୁଦ୍ଧଙ୍କଠାରୁ ଆହୁ କେତେଥର ଉପଦେଶ ଶ୍ରବଣ କରିବା ପରେ ଜ୍ଞାନ ଲାଭ କଲେ । ଏହି ପାଞ୍ଚଜଣଙ୍କୁ ନେଇ ବୁଦ୍ଧ ତାଙ୍କର ପ୍ରଥମ ଭିକ୍ଷୁ ସଂଘ ସ୍ଥାପନ କଲେ ।

ବୁଦ୍ଧଙ୍କର ଏହି ପ୍ରଥମ ଧର୍ମୋପଦେଶ ଧର୍ମଚକ୍ର ପ୍ରବର୍ତ୍ତନ ସୂତ୍ର ନାମରେ ପ୍ରସିଦ୍ଧ । ଅତି ପ୍ରାଚୀନ କାଳରୁ ଆମ ଦେଶରେ ଧର୍ମକୁ ଏକ ଚକ୍ର ସହିତ ତୁଳନା କରାଯାଇଛି । କାରଣ ଚକ୍ର ଯେପରି ଅନନ୍ତ, ସେ କେଉଁଠି ଆରମ୍ଭ ହୋଇଛି, କେଉଁଠି ଶେଷ ହୋଇଛି ତାହା ବୁଝାଯାଇ ପାରିବ ନାହିଁ, ଧର୍ମ ବି ସେହିପରି ଅନାଦିକାଳରୁ ରହିଛି । ତେଣୁ ଏହାକୁ 'ଅଖଣ୍ଡମଣ୍ଡଳାକାରଂ' ବୋଲି ବୁଝାଯାଇଛି । ଧର୍ମ ଯେତେବେଳେ ଲୁପ୍ତ ହେବାକୁ ବସେ ଏବଂ ଧର୍ମ ନାମରେ ନାନା କୁସଂସ୍କାର ପ୍ରଚଳିତ ହୁଏ, ସେତେବେଳେ ଜଣେ ଜଣେ

ମହାପୁରୁଷ ତାହାଙ୍କ ଲୁପ୍ତ ହେବାକୁ ବସିଥିବା ଧର୍ମକୁ ପୁଣି ପ୍ରବର୍ତ୍ତନ କରନ୍ତି । ଭାରତୀୟ ଧର୍ମ ଏହିପରି କୁସଂସ୍କାରପୂର୍ଣ୍ଣ ହୋଇଥିବା ବେଳେ ଗୌତମ ବୁଦ୍ଧ ଏହି ଧର୍ମଚକ୍ରକୁ ପୁଣି ପ୍ରବର୍ତ୍ତନ କଲେ ।



ସେ ଯେଉଁ ମୃଗବନରେ ପ୍ରଥମେ ଏହି ଧର୍ମଚକ୍ର ପ୍ରବର୍ତ୍ତନ କଲେ, ତାହା ଏବେ ସାରନାଥ ନାମରେ ଖ୍ୟାତ । ବୁଦ୍ଧଙ୍କର ମୃତ୍ୟୁର ପ୍ରାୟ ତିନିଶହ ବର୍ଷ-ପରେ ସମ୍ରାଟ ଅଶୋକ ଏହି ଘଟଣା ଓ ସ୍ଥାନକୁ ସ୍ମରଣୀୟ କରି ରଖିବା ପାଇଁ ଏଠାରେ ସ୍ତମ୍ଭ ନିର୍ମାଣ କଲେ ଏବଂ ଏହି ସ୍ତମ୍ଭର ଦେହରେ ୨୪ଟି ପତ୍ରବିଶିଷ୍ଟ ଚକ୍ର ଧର୍ମର ପ୍ରତୀକରୂପେ ଖୋଦନ କରାଇଲେ । ଏବେ ଅଶୋକଙ୍କ ସ୍ତମ୍ଭର ଏହି ଅଂଶଟି ସାରନାଥ ମ୍ୟୁଜିୟମରେ ରକ୍ଷିତ ଅଛି ଏବଂ ଭାରତ ଏହି ଅଶୋକ ଚକ୍ର ବା ଧର୍ମଚକ୍ରକୁ ତା'ର ଜାତୀୟ ପତାକାରେ ସ୍ଥାନ ଦେଇ ବୁଦ୍ଧଙ୍କର ସ୍ମୃତିକୁ ସର୍ବଶ୍ରେଷ୍ଠ ସମ୍ମାନ ଦେଖାଇଛି ।



# ବହୁଜନ ହିତାୟ, ବହୁଜନ ସୁଖାୟ

ବୁଦ୍ଧ ଋଷିପତ୍ତନର ମୃଗବନରେ ତାଙ୍କର ପ୍ରଥମ ପାଞ୍ଚଜଣ ଶିଷ୍ୟଙ୍କ ସହିତ କିଛିକାଳ ଅବସ୍ଥାନ କରିଥିଲେ । ଏହି ସମୟ ମଧ୍ୟରେ ବାରାଣସୀ ନଗରୀର ବହୁ ସମ୍ଭ୍ରାନ୍ତ ଓ ଧନୀ ପରିବାରର ଯୁବକ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ବାରାଣସୀର ଶ୍ରେଷ୍ଠୀ ବା ସାଧବଙ୍କର ପୁତ୍ର ଯଶ ନାମକ ଯୁବକ ଏମାନଙ୍କ ମଧ୍ୟରେ ପ୍ରଧାନ ।

ଯଶ କିପରି ପ୍ରଥମେ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ, ସେ ସମ୍ପର୍କରେ ଏକ ସୁନ୍ଦର ଉପାଖ୍ୟାନ ଅଛି । ଯଶ ରାଜକୁମାର ଗୌତମଙ୍କ ପରି ଖୁବ୍ ସୁକୁମାର ଯୁବକ ଥିଲେ । ଧନୀ ଶ୍ରେଷ୍ଠୀ ପରିବାରର ପୁତ୍ର ସ୍ୱରୂପରେ ତାଙ୍କର କୌଣସି ଅଭାବ ନଥିଲା । ବିଳାସ, ଆମୋଦ, ପ୍ରମୋଦ ମଧ୍ୟରେ ସେ କାଳ କାଟୁଥିଲେ । ମାତ୍ର ଘୋର ବିଳାସ ମଧ୍ୟରେ ରହି ଦିନେ ତାଙ୍କର ବୈରାଗ ଜାତ ହେଲା । ରାତିର ଶେଷ ଯାମରେ ତାଙ୍କର ଶୟନ କକ୍ଷରେ ଦାସୀ ଏବଂ ନର୍ତ୍ତକୀମାନେ ଶୋଇଥିବା ବେଳେ ସେ ଘର ଛାଡ଼ି ପଳାଇଲେ । ଏହାପରେ କଥିତ ଅଛି ଯେ, ସେ ବାରାଣସୀ ନଗରର ଦ୍ୱାର ଅତିକ୍ରମ କରି ଯାଇ ଯାଇ ଋଷିପତ୍ତନର ମୃଗବନରେ, ଯେଉଁଠାରେ ଗୌତମ ବୁଦ୍ଧ ରହୁଥିଲେ, ସେଠାରେ ଯାଇ ପହଞ୍ଚିଲେ । ଏ ସଂସାରଟା ଖାଲି ଦୁଃଖ, ଖାଲି ସନ୍ତାପ ବୋଲି ସେ କହି କହି ଯାଉଥିଲେ । ଏହି ସମୟରେ ଗୌତମ ବୁଦ୍ଧ ନିଦ୍ରାରୁ ଉଠି ସେଠାରେ ବୁଲୁଥିଲେ ଏବଂ ଏ ଯୁବକଙ୍କୁ ଦେଖି ତାଙ୍କୁ ନେଇ ନିଜ ପାଖରେ ବସାଇଲେ । ସଂସାରର ଦୁଃଖ ଛାଡ଼ି ସୁଖ ବାଟରେ ଚାଲିବା ପାଇଁ ସେ ଧର୍ମ ଉପଦେଶ ଦେଲେ ।

ସକାଳ ହେବାରୁ ଯଶଙ୍କର ଖୋଜା ପଡ଼ିଲା । ତାଙ୍କର ପିତା ନଗରର ଶ୍ରେଷ୍ଠୀ ଚାରିଆଡ଼େ ଲୋକ ପଠାଇଲେ ଏବଂ ନିଜେ ମଧ୍ୟ ଖୋଜି ଖୋଜି ଋଷିପତ୍ତନରେ ପହଞ୍ଚିଲେ । ଗୌତମ ଦୂରରୁ ଶ୍ରେଷ୍ଠୀଙ୍କୁ ଦେଖି ଯଶଙ୍କୁ ଯୋଗ-ବଳରେ ଅଦୃଶ୍ୟ କରିଦେଲେ ଏବଂ ଶ୍ରେଷ୍ଠୀ ତାଙ୍କ ପାଖକୁ ଆସିବାରୁ ସେଠାରେ କିଛି ସମୟ ବସିଲେ ପୁତ୍ରର ସନ୍ଧାନ ପାଇ ପାରିବେ ବୋଲି ସେ ତାଙ୍କୁ ପରା-ମର୍ଶ ଦେଲେ । ଶ୍ରେଷ୍ଠୀ ପୁତ୍ରର ସନ୍ଧାନ ପାଇବା ପାଇଁ ସେଠାରେ ବସିଥିବା ବେଳେ ଗୌତମ ତାଙ୍କର ଧର୍ମ ଉପଦେଶ ଆରମ୍ଭ କଲେ । ତାଙ୍କର ଉପଦେଶ ଏପରି ହେଲା ଯେ ଶ୍ରେଷ୍ଠୀ ତାଙ୍କର ପୁତ୍ରଚିନ୍ତା କିଛି ସମୟ ପାଇଁ ଭୁଲିଗଲେ । ଠିକ୍ ଏହି ସମୟରେ ବୁଦ୍ଧ ଅଦୃଶ୍ୟ ହୋଇଥିବା ଯଶଙ୍କୁ ପୁଣି ଦୃଶ୍ୟମାନ କରି ଦେଲେ ଏବଂ କହିଲେ, "ହେ ଶ୍ରେଷ୍ଠୀ, ମୁଁ ତୁମକୁ ଯେଉଁ ଉପଦେଶ ଦେଇଛି, ଦୁଃଖମନରେ ବୁଲୁଥିବା ତୁମ ପୁତ୍ରକୁ ମୁଁ ଠିକ ସେହି ଉପଦେଶ ଦେଇଛି । ମୁଁ ତା'ର ମଙ୍ଗଳ କରିଛି ନା ଅମଙ୍ଗଳ କରିଛି ?" "ସେ ମଙ୍ଗଳ କରିଛନ୍ତି" ବୋଲି ଶ୍ରେଷ୍ଠୀ କହିବାରୁ ବୁଦ୍ଧ ଉତ୍ତର ଦେଲେ; "ତୁମର ପୁତ୍ର ଯେଉଁ ମଙ୍ଗ-ଳର ବାଟରେ ଚାଲିଛି, ତୁମେ ଆଉ ତାକୁ ଫେରାଅ ନାହିଁ । ସେ ଆଉ ଫେରିବ ନାହିଁ ।" ଶ୍ରେଷ୍ଠୀ ମନେ ମନେ ବୁଦ୍ଧଙ୍କର ଉପାସକ ହୋଇଯାଇଥିଲେ । ସେ ପୁତ୍ରର ସଙ୍କଳ୍ପ ଦେଖି ତାକୁ ଆଉ ଫେରାଇନେବା ପାଇଁ ଜିଦ କଲେ ନାହିଁ, ମାତ୍ର ଶିଷ୍ୟମାନଙ୍କ ସହ ବୁଦ୍ଧ ତାଙ୍କ ଘରକୁ ଖାଇବାକୁ ଯିବା ପାଇଁ ସେ ନିମନ୍ତ୍ରଣ କଲେ ।

ପର ଦିନ ବୁଦ୍ଧ ଯଶ ଓ ତାଙ୍କର ଅନ୍ୟ ପାଞ୍ଚ ଜଣ ଶିଷ୍ୟଙ୍କ ସହିତ ଶ୍ରେଷ୍ଠୀଙ୍କ ଘରକୁ ଖାଇବାକୁ ଗଲେ ଏବଂ ଖାଇସାରିବା ପରେ ଯଶଙ୍କ ପିତା, ମାତା ଓ ପତ୍ନୀଙ୍କୁ ଧର୍ମୋପଦେଶ ଶୁଣାଇଲେ । ସେମାନେ ବୁଦ୍ଧଙ୍କର ଉପାସକ ବା ଗୃହୀ ଶିଷ୍ୟରୂପେ ନିଜକୁ ଘୋଷଣା କଲେ । ଯଶଙ୍କର ଦୀକ୍ଷା ପରେ ତାଙ୍କର ବହୁ ବନ୍ଧୁ ଓ ସହଚର ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ବାରାଣସୀ ଓ ତା'ର ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ବହୁ ସମ୍ଭ୍ରାନ୍ତ ଯୁବକ ସନ୍ନ୍ୟାସୀର ଦୀକ୍ଷା ଗ୍ରହଣ କଲେ ଏବଂ ଅଳ୍ପକାଳ ମଧ୍ୟରେ ବୁଦ୍ଧଙ୍କର ଶିଷ୍ୟ ବା ଭିକ୍ଷୁଙ୍କର ସଂଖ୍ୟା ଷାଠିଏ ହୋଇଗଲା ।

ଯୁଗେ ଯୁଗେ ମୁକ୍ତମାନେ ହିଁ ନୂତନ ଧର୍ମ ବା ନୂତନ ସଂସ୍କାରର ଅଗ୍ରଦୂତରୂପେ ଦେଖାଯାଆନ୍ତି । ସେମାନଙ୍କର ତ୍ୟାଗ, ନିଷ୍ଠା ଓ ପରିଶ୍ରମ ବଳରେ ଏହି ନୂତନ ଧର୍ମ ବା ସଂସ୍କାର ପ୍ରସାର ଲାଭ କରେ । ତେଣୁ କିଛି କାଳ ପରେ ଏହି ତରୁଣ ଭିକ୍ଷୁ ସଂଘକୁ ସମ୍ବୋଧନ କରି ବୁଦ୍ଧ କହିଲେ, "ଭିକ୍ଷୁଗଣ, ମୁଁ ସଂସାରର ସମସ୍ତ ବନ୍ଧନରୁ ମୁକ୍ତ । ତୁମେମାନେ ମଧ୍ୟ ମୁକ୍ତ । ବର୍ତ୍ତମାନ ଯାଅ, ବହୁ ଲୋକଙ୍କର ସୁଖପାଇଁ, ବହୁ ଲୋକଙ୍କର ହିତପାଇଁ ଏହି ନୂତନ ଧର୍ମ ପ୍ରଚାର କର । ଏକ ସ୍ଥାନରେ ଦୁଇଜଣ ଯାଅ ନାହିଁ । ପ୍ରଥମରୁ କଲ୍ୟାଣ, ମଧ୍ୟରେ କଲ୍ୟାଣ ଓ ଶେଷରେ କଲ୍ୟାଣ କରୁଥିବା ଏହି ଆର୍ଯ୍ୟ ଧର୍ମର ଉପଦେଶ ଦିଅ । ଏହିପରି ବହୁ ଲୋକ ଅଛନ୍ତି, ଯେଉଁମାନେ ଶୁଦ୍ଧ ଓ ନିର୍ଦ୍ଦୋଷ । ଏ ଧର୍ମ ନଜାଣି ସେମାନେ ମରିଯିବେ, ମୁଁ ଏ କଥା ଚାହେଁ ନାହିଁ । ମୁଁ ମଧ୍ୟ ଯାଉଛି, ଉରୁବେଲା ପ୍ରଦେଶର ସେନାନୀ ଗ୍ରାମରେ ଧର୍ମ ଉପଦେଶ ଦେବି ।"

ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରିବା ପାଇଁ ସେତେବେଳେ ଏତେ ଲୋକ ବ୍ୟାକୁଳ ଥିଲେ ଯେ, ସେ ନିଜେ ସମସ୍ତଙ୍କୁ ଦୀକ୍ଷା ଦେଇ ପାରୁ ନ ଥିଲେ । ତେଣୁ ସେ ଶିଷ୍ୟମାନଙ୍କୁ ଆଦେଶ ଦେଲେ, ପ୍ରତ୍ୟେକେ ଦୀକ୍ଷା ଦେଇପାରିବେ । ଦୀକ୍ଷା ଗ୍ରହଣ କରୁଥିବା ଲୋକକୁ ମୁଣ୍ଡବାଳ ଓ ଦାଢ଼ି କାଟିବାକୁ ହେବ । ଗୈରିକ ବସ୍ତ୍ର ପିନ୍ଧିବାକୁ ହେବ ଓ ଭିକ୍ଷାପାତ୍ର ଗ୍ରହଣ କରିବାକୁ ହେବ । ତା'ପରେ ସେ ହାତ ଯୋଡ଼ି ଭିକ୍ଷୁମାନଙ୍କୁ ପ୍ରଣାମ କରି ତିନଥର କହିବେ, "ମୁଁ ବୁଦ୍ଧଙ୍କର ଶରଣ ଯାଉଛି, ଧର୍ମର ଶରଣ ଯାଉଛି ଓ ସଂଘର ଶରଣ ଯାଉଛି ।"



# ପ୍ରତିଜ୍ଞା ପାଳନ

ଋଷିପତ୍ତନରୁ ତାଙ୍କର ଶିଷ୍ୟମାନଙ୍କୁ ଚତୁର୍ଦ୍ଦିଗକୁ ପଠାଇ ବୁଦ୍ଧ ଉରୁବେଳା ଯାତ୍ରା କଲେ । ଉରୁବେଳା ନଗର ସୀମାରେ ଏକ ଗଛମୂଳେ ସେ ବିଶ୍ରାମ ନେଉଥିଲେ, ଦେଖିଲେ କେତେ ଯୁବକ ଯୁବତୀ ଖୁବ୍ ଦୁଃଖ ମନରେ କ'ଣ ଗୋଟାଏ ଖୋଜି ତାଙ୍କ ଆଡକୁ ଆସୁଛନ୍ତି ।

ଏହି ଯୁବକଯୁବତୀମାନେ ବଣଭୋଜି ଓ ବଣରେ ଆମୋଦ କରିବା ପାଇଁ ଯାଇଥିଲେ । ତିରିଶ ଜଣ ଯୁବକଙ୍କ ମଧ୍ୟରୁ ୨୯ ଜଣ ଯୁବକଙ୍କର ନିଜର ସ୍ତ୍ରୀ ଥିଲେ; ମାତ୍ର ଜଣଙ୍କର ସ୍ତ୍ରୀ ନ ଥିଲା । ସେ ଗୋଟିଏ ବେଶ୍ୟାକୁ ସାଙ୍ଗରେ ନେଇ ଯାଇଥିଲା । ଯୁବକଯୁବତୀମାନେ ଖୁବ୍ ମଉଜ ମଜଲିସରେ ମାତିଥିବା ବେଳେ ବେଶ୍ୟା ତାଙ୍କର ସବୁ ଜିନିଷପତ୍ର ଓ ଅଳଙ୍କାର ଚୋରି କରି ନେଇ ଚମ୍ପଟ ଦେଲା । ଏଥିରେ ଏମାନେ ବିବ୍ରତ ହୋଇ ସେ ବେଶ୍ୟାକୁ ଖୋଜି ଖୋଜି ବୁଦ୍ଧଙ୍କ ପାଖରେ ଆସି ପହଞ୍ଚିଲେ ଏବଂ ସେ ଏପରି ଏକ ଲୋକକୁ ଦେଖିଛନ୍ତି କି ବୋଲି ପଚାରିଲେ । ବୁଦ୍ଧ ଉତ୍ତର ଦେଲେ, "ତୁମେ ଏ ସ୍ତ୍ରୀ-ଲୋକଟିକୁ ନ ଖୋଜି ନିଜକୁ ଖୋଜୁନାହଁ କାହିଁକି ?" ଯୁବକମାନେ ପ୍ରଥମେ କିଛି ବୁଝିପାରିଲେ ନାହିଁ; ମାତ୍ର ପରେ ବୁଦ୍ଧଙ୍କର ଧର୍ମ ଉପଦେଶ ଶୁଣି ନିଜକୁ ଲଜ୍ଜିତ ଅନୁଭବ କଲେ ଏବଂ ତାଙ୍କୁ ଅଭିବାଦନ କରି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ ।

ଏହି ସମୟରେ ଉରୁବେଳା ପ୍ରଦେଶରେ ତିନିଜଣ ପ୍ରସିଦ୍ଧ ଅଗ୍ନିହୋତ୍ରୀ ବ୍ରାହ୍ମଣ ରହୁଥିଲେ । ଏମାନେ ତିନିଭାଇ—ଉରୁବେଳା କାଶ୍ୟପ, ନଦୀ କାଶ୍ୟଣ ଓ ଗୟା କାଶ୍ୟପ । ଏମାନଙ୍କୁ କାଶ୍ୟପ ବନ୍ଧୁ ନାମରେ ଅଭିହିତ

କରୁଥିଲେ । ଏମାନଙ୍କ ମଧ୍ୟରୁ ଉରୁବେଲା କାଶ୍ୟପ ପ୍ରଧାନ । ତାଙ୍କର ଏକ ହଜାର ଶିଷ୍ୟ ଥିଲେ । କାଶ୍ୟପ ଆଶ୍ରମରେ ସବୁବେଳେ ହୋମର ଅଗ୍ନି ଜଳୁଥିଲା ଏବଂ ବେଦମନ୍ତ୍ର ପାଠ କରୁଥିଲେ । ଅଗ୍ନିଶାଳାରୁ ଏକ ପ୍ରଚଣ୍ଡ ବିଷଧର ସର୍ପ ଜଗି ରହୁଥିଲା । ସବୁଠାରୁ ପଣ୍ଡିତ ଓ ଜ୍ଞାନୀ ବୋଲି କାଶ୍ୟପ-ମାନଙ୍କର ଖୁବ ଗର୍ବ ଥିଲା ।

ବୁଦ୍ଧ କାଶ୍ୟପ ଆଶ୍ରମରେ ପହଞ୍ଚି ସେଠାରେ ଗୋଟିଏ ରାତି କଟାଇବା ପାଇଁ ଅନୁରୋଧ କଲେ । ପ୍ରଥମେ ତାଙ୍କୁ ସ୍ଥାନ ମିଳୁ ନ ଥିଲା । ପରେ ରାତିକ କଟାଇବା ପାଇଁ ଅଗ୍ନିଶାଳାରେ ତାଙ୍କୁ ସ୍ଥାନ ମିଳିଲା । ସେଠାରେ ରାତ୍ରିଯାପନ କରୁଥିବା ବେଳେ ନାଗରାଜ ଆଶ୍ରମରେ ଜଣେ ଆଗନ୍ତୁକଙ୍କୁ ଦେଖି ରାଗରେ ପ୍ରଜ୍ୱଳିତ ହୋଇ ଉଠିଲା । ନାଗର ବିଷଜ୍ୱାଳାରେ ସମସ୍ତ ଗୃହ ପୂରିଗଲା । ମାତ୍ର ସମାଧିସ୍ଥ ହୋଇ ବୁଦ୍ଧ ନିଜ ଦେହରୁ ଯେଉଁ ତେଜ ବାହାର କଲେ, ସେଥିରେ ନାଗ କ୍ରମେ ନିସ୍ତେଜ ହୋଇ ମଲା ପରି ପଡ଼ି ରହିଲା । ସକାଳ ହେବାରୁ କାଶ୍ୟପ ଓ ତାଙ୍କର ଶିଷ୍ୟମାନେ ଏହା ଦେଖି ଚମତ୍କୃତ ହୋଇ-ଗଲେ ଏବଂ ଶୀତକାଳ ସେଠାରେ କଟାଇବା ପାଇଁ ସେମାନେ ବୁଦ୍ଧଙ୍କୁ ଅନୁରୋଧ କଲେ । ବୁଦ୍ଧ ସେଠାରେ ରହୁଥିବାବେଳେ ଏପରି ଏକ ବର୍ଷା ଆସିଲା ଯେ, ଉରୁବେଲା ଜଳମଗ୍ନ ହୋଇଗଲା । ମାତ୍ର ବୁଦ୍ଧ ଯେଉଁ ସ୍ଥାନରେ ଥିଲେ, ସେଠାରେ ପାଣି ପଶିପାରିଲା ନାହିଁ । ଏହିପରି ନାନା ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରି ବୁଦ୍ଧ କାଶ୍ୟପ ବନ୍ଧୁମାନଙ୍କୁ ଚମତ୍କୃତ କଲେ ଏବଂ ନିଜର ଜ୍ଞାନ ଓ ବ୍ୟବହାରଦ୍ୱାରା ସେମାନଙ୍କୁ ମୁଗ୍ଧ କଲେ । ଶେଷକୁ ବ୍ରାହ୍ମଣ ସମ୍ପ୍ରଦାୟର ଏହି ପ୍ରଧାନ ପାଠର ସମସ୍ତ ସନ୍ନ୍ୟାସୀଙ୍କ ସହ କାଶ୍ୟପ ବୁଦ୍ଧଙ୍କର ଦୀକ୍ଷା ଗ୍ରହଣ କରି ତାଙ୍କର ଅନୁଗାମୀ ହେଲେ ।

ଉରୁବେଲାରେ ରହୁଥିବାବେଳେ ବୁଦ୍ଧଙ୍କର ଏକ ପୁରୁଣା ପ୍ରତିଜ୍ଞା କଥା ମନେପଡ଼ିଲା । ସେ ରାଜଗୃହରେ ରାଜା ବିମ୍ବିସାରଙ୍କୁ ପ୍ରତିଜ୍ଞା କରି-ଥିଲେ ଯେ, ବୁଦ୍ଧତ୍ୱ ଲାଭ କଲାପରେ ତାଙ୍କ ପାଖକୁ ଯିବେ । ତେଣୁ ସେ କାଶ୍ୟପ ବନ୍ଧୁ ଓ ଏକ ହଜାର ଶିଷ୍ୟଙ୍କ ସହ ରାଜଗୃହ ଯାତ୍ରାକଲେ ।

ରାଜଗୃହ ଉପକଣ୍ଠରେ ଏକ ସୁନ୍ଦର ବାଉଁଶର ବନ ଥିଲା । ଏହା ବେଣୁବନ ନାମରେ ଖ୍ୟାତ ଲାଭ କରିଥିଲା । ଏହିଠାରେ ବୁଦ୍ଧ ଯାଇ ତାଙ୍କର ଶିଷ୍ୟମାନଙ୍କ ସହ ଅବସ୍ଥାନ କଲେ ।

ରାଜା ବିମ୍ବିସାର ବୁଦ୍ଧଙ୍କର ଯଶୋଗାଥା ଆଗରୁ ଶୁଣିଥିଲେ । ଏବେ ତାଙ୍କର ଆସିବା ସମ୍ବାଦ ପାଇ, ପ୍ରଧାନମନ୍ତ୍ରୀ ଓ ବହୁ ନାଗରିକଙ୍କ ଗହଣରେ ବେଣୁ ବନରେ ପହଞ୍ଚିଲେ । କାଶ୍ୟପ ଓ ବୁଦ୍ଧ ଉଭୟଙ୍କୁ ଏକ ସ୍ଥାନରେ ଦେଖି କିଏ ଗୁରୁ, କିଏ ଶିଷ୍ୟ, ତାହା ରାଜା ଓ ଅନ୍ୟମାନେ ପ୍ରଥମେ ଜାଣି ପାରିଲେ ନାହିଁ । କାଶ୍ୟପ ଏହା ଜାଣିପାରି ବୁଦ୍ଧଙ୍କର ଚରଣ ବନ୍ଦନା କରି କହିଲେ, "ମହାଶୟ, ତଥାଗତ ମୋର ଗୁରୁ । ମୁଁ ତାଙ୍କର ଶିଷ୍ୟ ।"

ବୁଦ୍ଧ ରାଜା ବିମ୍ବିସାରଙ୍କୁ ଧର୍ମ ଉପଦେଶ ଦେଇଥିଲେ । ବହୁବାର ରାଜା ତାଙ୍କୁ ଏବଂ ଭିକ୍ଷୁ ସଂଘକୁ ଭୋଜନ ପାଇଁ ରାଜପ୍ରାସାଦକୁ ନିମନ୍ତ୍ରଣ କରିଥିଲେ । ଶେଷରେ ରାଜା ବୁଦ୍ଧଙ୍କର ଉପାସକ ବା ଗୃହୀ ଶିଷ୍ୟ ଭାବରେ ନିଜକୁ ଘୋଷଣା କଲେ ଏବଂ ରାଜଗୃହର ପ୍ରସିଦ୍ଧ ବେଣୁବନ ତାଙ୍କୁ ଏବଂ ଭିକ୍ଷୁସଂଘକୁ ଦାନ କଲେ । ମଗଧର ରାଜା ବିମ୍ବିସାର ଭାରତର ପ୍ରଥମ ରାଜା, ଯେ କି ବୁଦ୍ଧଙ୍କର ଉପାସକ ହୋଇଥିଲେ ।

# ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ

ଏହି ସମୟରେ ସଞ୍ଜୟ ନାମକ ଜଣେ ପରିବ୍ରାଜକ ରାଜଗୃହରେ ବାସ କରୁଥିଲେ । ତାଙ୍କର ଅଢ଼େଇ ଶହ ଶିଷ୍ୟ ଥିଲେ । ସେମାନଙ୍କ ମଧ୍ୟରେ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ନିଜ ବିଦ୍ୟା ବୁଦ୍ଧିରେ ପ୍ରଧାନ ଥିଲେ ।

ଥରେ ବୁଦ୍ଧଙ୍କର ଭିକ୍ଷୁ ସଂଘ ମଧ୍ୟରୁ ଅଶ୍ୱଜିତ୍ ରାଜଗୃହ ନଗରକୁ ଭିକ୍ଷା ପାଇଁ ଯାଇଥିଲେ । ସାରିପୁତ୍ର ମଧ୍ୟ ଏହି ସମୟରେ ଭିକ୍ଷା କରୁଥିଲେ । ସେ ଅଶ୍ୱଜିତ୍‌ଙ୍କର ସୁନ୍ଦର ରୂପ ଓ ଶାନ୍ତ ମୁଖମଣ୍ଡଳ ଦେଖି କିଏ ତାଙ୍କର ଗୁରୁ ଓ ତାହାର ଧର୍ମକୁ ସେ ମାନୁଛନ୍ତି ବୋଲି ପଚାରିଲେ ।

ଅଶ୍ୱଜିତ୍ ଉତ୍ତର ଦେଲେ, "ଆୟୁଷ୍ମାନ, ଶାକ୍ୟବଂଶଜାତ ଭଗବାନ ବୁଦ୍ଧ ମୋର ଗୁରୁ । ମୁଁ ତାଙ୍କ ଧର୍ମକୁ ସ୍ୱୀକାର କରୁଛି ।" ସାରିପୁତ୍ର ପଚାରିଲେ, "ଆପଣଙ୍କ ଗୁରୁଙ୍କର ଧର୍ମ କ'ଣ ଓ ସେ କି ମତବାଦ ପ୍ରଚାର କରନ୍ତି ?" ଅଶ୍ୱଜିତ୍ କହିଲେ "ମୁଁ ନୂଆ ହୋଇ ଦୀକ୍ଷା ଗ୍ରହଣ କରିଛି । ମୁଁ ଆପଣଙ୍କୁ ବିସ୍ତାରିତ ଭାବରେ ଏହି ଧର୍ମର ଉପଦେଶ ଦେଇ ପାରିବି ନାହିଁ । ତେବେ ସଂକ୍ଷେପରେ କହୁଛି—ଯେଉଁ କାରଣରୁ ପ୍ରାଣୀମାନେ ସଂସାରରେ ଦୁଃଖ ଭୋଗ କରନ୍ତି ଏବଂ କ'ଣ କଲେ ଏ ଦୁଃଖରୁ ମୁକ୍ତି ମିଳିପାରିବ, ଏହା ମୋର ଗୁରୁ ତଥାଗତ ଶିକ୍ଷା ଦିଅନ୍ତି ।"

ଏହିପରି କଥିତ ଅଛି ଯେ, ଏହା ଶୁଣିବା ପରେ ସାରିପୁତ୍ରଙ୍କର ଅଜ୍ଞାନର ପରଦା ହଟିଗଲା ଏବଂ ନିର୍ମଳ ଧର୍ମଚକ୍ଷୁ ଉତ୍ପନ୍ନ ହେଲା । ସେ ଅଶ୍ୱଜିତ୍‌ଙ୍କୁ ଧନ୍ୟବାଦ ଦେଇ ଆଶ୍ରମକୁ ଫେରିଗଲେ ।

ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କ ମଧ୍ୟରେ ଚୁକ୍ତି ହୋଇଥିଲା ଯେ, ଦୁଇ ଜଣଙ୍କ ମଧ୍ୟରୁ ଯେ ପ୍ରଥମେ ଧର୍ମଜ୍ଞାନ ଲାଭ କରିବ, ସେ ଅନ୍ୟକୁ ତାହା ଶିକ୍ଷା ଦେବ । ତେଣୁ ସାରିପୁତ୍ର ଫେରିଯାଇ ମୌଦ୍‌ଗଲ୍ୟାୟନଙ୍କୁ ସମସ୍ତ କଥା କହିଲେ । ଏହା ଶୁଣି ମୌଦ୍‌ଗଲ୍ୟାୟନଙ୍କ ହୃଦୟରେ ଧର୍ମ-ଜ୍ଞାନର ଉଦୟ ହେଲା ଏବଂ ଉଭୟେ ଠିକ କଲେ, ଆଶ୍ରମରେ ଥିବା ଅଢ଼େଇ ଶହ ବ୍ରହ୍ମଚାରୀଙ୍କ ସହ ସେମାନେ ବୁଦ୍ଧଙ୍କର ଦର୍ଶନ ପାଇଁ ଯିବେ ଏବଂ ଦୀକ୍ଷା ଗ୍ରହଣ କରିବେ । ସଞ୍ଜୟ ବୁଦ୍ଧଙ୍କର ଜଣେ ବିରୋଧୀ ଥିଲେ । ତେଣୁ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ଜପର ନ ଯିବେ, ସେଥିପାଇଁ ଖୁବ ଚେଷ୍ଟା କଲେ । ମାତ୍ର ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା ଏବଂ ଆଶ୍ରମର ଅନ୍ୟ ସହକର୍ମୀ-ମାନଙ୍କ ସହ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ବୁଦ୍ଧଙ୍କର ଦର୍ଶନ ପାଇଁ ଯାତ୍ରା କଲେ ।

ଦୂରରୁ ଏମାନଙ୍କୁ ଆସୁଥିବାର ଦେଖି ବୁଦ୍ଧ ତାଙ୍କର ଶିଷ୍ୟମାନଙ୍କୁ ଡାକି କହିଲେ, "ଭିକ୍ଷୁଗଣ, ଏ ଯେଉଁ ଦୁଇବନ୍ଧୁ ଆସୁଛନ୍ତି, ଏ ମୋର ସର୍ବପ୍ରଧାନ ଶିଷ୍ୟ ହେବେ ।"

ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ବୁଦ୍ଧଙ୍କଠାରୁ ଧର୍ମ ଉପଦେଶ ଲାଭ କରି ଦୀକ୍ଷା ଗ୍ରହଣ କଲେ ଏବଂ ନିଜର ବୁଦ୍ଧି, ଜ୍ଞାନ, ଯଯମ ଓ ଚରିତ୍ରବଳରେ ବୁଦ୍ଧଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ହେଲେ ।



# କପିଳବାସ୍ତୁ ଯାତ୍ରା

ବଦ୍ଧ ଶୀତ ଋତୁ ରାଜଗୃହରେ କଟାଇଥିଲେ । ରାଜଗୃହରେ ଅବସ୍ଥାନ କାଳରେ ତାଙ୍କର ପ୍ରଭାବ ଏପରି ଲୋକପ୍ରିୟ ହୋଇ ପାରିଥିଲା ଯେ, ପ୍ରାୟ ପ୍ରତି ଗୃହରୁ ଯୁବକମାନେ ଆସି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସମ୍ଭ୍ରାନ୍ତ ବଂଶର ଯୁବକମାନେ ବହୁ ସଂଖ୍ୟାରେ ଶିଷ୍ୟ ହେଉଥିଲେ । ଏପରି ହେଲା ଯେ, ମଗଧ ରାଜ୍ୟର ସମସ୍ତ ଯୁବକ ବୁଦ୍ଧଙ୍କର ଶିଷ୍ୟ ହୋଇଯିବେ, ଆଉ କୁଳରେ ପାଣି ଦେବା ପାଇଁ କେହି ରହିବେ ନାହିଁ ବୋଲି ସବୁଆଡ଼େ କେତେକ ଦୁଷ୍ଟ ଲୋକ ପ୍ରଚାର କଲେ । ମାତ୍ର ଏ ଅପରଞ୍ଜିତ ପ୍ରଚାର ବେଶୀ ଦିନ ରହି ନଥିଲା ।

ଗୌତମ ସନ୍ନ୍ୟାସୀ ହୋଇଯିବା ପରେ ରାଜା ଶୁଦ୍ଧୋଦନ ମନ ଦୁଃଖରେ କାଳାତିପାତ କରୁଥିଲେ । ରାଜକୁମାରୀ ଯଶୋଧାରା ରାଜପ୍ରାସାଦ ମଧ୍ୟରେ ରହି ମଧ୍ୟ ସମସ୍ତ ଭୋଗବିଳାସ ଛାଡ଼ି ଦେଇଥିଲେ । ସ୍ୱାମୀ ଗୈରିକ ବସ୍ତ୍ର ପିନ୍ଧୁଥିବାର ଶୁଣି ସେ ମଧ୍ୟ ଗୈରିକ ବସ୍ତ୍ର ପିନ୍ଧୁଥିଲେ । ସ୍ୱାମୀ ଦିନକେ ଥରେ ମାତ୍ର ଖାଉଥିବାର ଶୁଣି ସେ ମଧ୍ୟ ଦିନରେ ଥରେ ମାତ୍ର ଖାଇଲେ । ଉଚ୍ଚ ପଲଙ୍କ ଛାଡ଼ି ସେ ଭୂମିଶଯ୍ୟାରେ ଶୋଉଥିଲେ ଏବଂ ଅଳଙ୍କାର, ଗନ୍ଧ ଚନ୍ଦନ ଆଦି ବ୍ୟବହାର କରୁନଥିଲେ । ତାଙ୍କର ଆଶା ଥିଲା ଯେ, ଦିନେ ଗୌତମ ଫେରିବେ । ଅଉ ଗୃହସ୍ଥ ନ ହେଲେ ମଧ୍ୟ ତାଙ୍କର ଦର୍ଶନର ସୌଭାଗ୍ୟ ମିଳିବ ।

ତାଙ୍କର ପୁତ୍ର ବୁଦ୍ଧ ହୋଇ ସବୁଆଡ଼େ ଖ୍ୟାତି ଲାଭ କରୁଥିବାର ସମ୍ବାଦ ରାଜା ଶୁଦ୍ଧୋଦନଙ୍କୁ ମିଳିଥିଲା । ଏବେ ସେ ରାଜଗୃହର ବେଣୁ-ବନରେ ରହୁଥିବାର ଖବର ପାଇ ନିଜର ଜଣେ ମନ୍ତ୍ରୀଙ୍କୁ ଡାକି କହିଲେ, "ତୁମେ ଏକ ହଜାର ଅନୁଚରଙ୍କ ଗହଣରେ ରାଜଗୃହ ଯାଅ ଏବଂ ସେଠାରେ ଯାଇ ମୋର ପୁଅକୁ କହ, 'ମହାରାଜା ଶୁଦ୍ଧୋଦନ ତୁମକୁ ଦେଖିବାକୁ ଇଚ୍ଛା କରୁଛନ୍ତି ।' ଏହା କହି ତାଙ୍କୁ କପିଳବାସ୍ତୁ ନେଇ ଆସ ।"

ମନ୍ତ୍ରୀ ଏକ ହଜାର ଅନୁଚରଙ୍କ ସହ ରାଜଗୃହର ବେଣୁବନରେ ପହଞ୍ଚିଲେ । ସେତେବେଳେ ବୁଦ୍ଧ ତାଙ୍କର ପ୍ରବଚନ ବା ଧର୍ମ ଉପଦେଶ ଦେଉଥିଲେ । ଏହାପରେ ବର୍ଣ୍ଣିତ ଅଛି ଯେ, ବୁଦ୍ଧଙ୍କର ଧର୍ମ ଉପଦେଶ ଶୁଣି ମନ୍ତ୍ରୀ ରାଜାଙ୍କଠାରୁ ଆଣିଥିବା ଖବର କଥା ଭୁଲିଗଲେ ଏବଂ ଅନୁଚରମାନଙ୍କ ସହ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଏହାପରେ ବହୁଥର ରାଜା ଶୁଦ୍ଧୋଦନ ପାତ୍ର, ଅମାତ୍ୟମାନଙ୍କୁ ପଠାଇଥିଲେ ଏବଂ ସେମାନେ ରାଜାଙ୍କ ଖବର ଦେବାକୁ ଭୁଲି ଯାଇ ବୁଦ୍ଧଙ୍କର ଶିଷ୍ୟ ହୋଇଯାଉଥିଲେ । ଶେଷକୁ ବୁଦ୍ଧଙ୍କର ବାଲ୍ୟ-କାଳର ଜଣେ ବନ୍ଧୁଙ୍କୁ ଶୁଦ୍ଧୋଦନ ପଠାଇଥିଲେ ଏବଂ ଏହି ବନ୍ଧୁ ରାଜାଙ୍କର ବାର୍ତ୍ତା ବୁଦ୍ଧଙ୍କୁ ଦେବାରେ ସଫଳ ହୋଇଥିଲେ । ଏହି ବାର୍ତ୍ତା ପାଇ ବୁଦ୍ଧ କପିଳବାସ୍ତୁ ଯିବା ସ୍ଥିର କଲେ ।

ଶୀତ ଋତୁର ଶେଷରେ ଯେତେବେଳେ କ୍ଷେତରୁ ଶସ୍ୟ ଅମଳ ହୋଇ ଦଳ ବାଛ ପରିଷ୍କାର ହୋଇଯାଇଥିଲା, ନୂଆ ବସନ୍ତର ପବନ ବହୁଥିଲା, ଗଛମାନଙ୍କରେ ନୂଆପତ୍ର ଜଅଁଳି ଉଠୁଥିଲା ଓ ସବୁଜ ଘାସରେ ସବୁଆଡ଼ ସୁନ୍ଦର ଦେଖାଯାଉଥିଲା, ସେହିପରି ଏକ ସମୟରେ ଗୌତମ ବୁଦ୍ଧ କପିଳବାସ୍ତୁ ପ୍ରତ୍ୟାବର୍ତ୍ତନ କରିଥିଲେ ବୋଲି ବର୍ଣ୍ଣିତ ଅଛି ।

ତାଙ୍କର ଆଗମନର ସମ୍ବାଦ ପାଇ, କପିଳବାସ୍ତୁର ନାଗରିକମାନେ ନଗରସୀମାରେ ଥିବା ନ୍ୟଗ୍ରୋଧ ନାମକ ଉଦ୍ୟାନକୁ ସୁସଜ୍ଜିତ କରି ରଖି-ଥିଲେ । ସେଠାରେ ପିଲାଙ୍କଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତ ନଗରବାସୀ ଉପସ୍ଥିତ ରହି ବୁଦ୍ଧ ଓ ତାଙ୍କର ଭିକ୍ଷୁମାନଙ୍କୁ ଅଭିନନ୍ଦନ କରିଥିଲେ । କଥିତ ଅଛି ଯେ, ସେତେବେଳକୁ ବୁଦ୍ଧଙ୍କର ଗହଣରେ କୋଡ଼ିଏ ହଜାର ଶିଷ୍ୟ ଥିଲେ ।

ପରଦିନ ତାଙ୍କର ଦୈନିକ କର୍ତ୍ତବ୍ୟ ପାଳନ କରି ବୁଦ୍ଧ ତାଙ୍କର ଶିଷ୍ୟମାନଙ୍କ ସହିତ କପିଳବାସ୍ତୁ ନଗରରେ ଭିକ୍ଷା କରିବା ପାଇଁ ବାହାରିଲେ । ରାଜାଙ୍କର ପୁତ୍ର ସିଦ୍ଧାର୍ଥ କୁମାର ଭିକ୍ଷା କରୁଛନ୍ତି ବୋଲି ଶୁଣି ନଗରବାସୀ ସ୍ତ୍ରୀ ପୁରୁଷମାନେ ଦ୍ୱାର ଝରକା ଖୋଲି ଏ ଦୃଶ୍ୟ ଦେଖିବାକୁ ଲାଗିଲେ । ଏ ଖବର ପାଇ ରାଜା ଶୁଦ୍ଧୋଦନ ନିଜକୁ ବଡ ଅପମାନିତ ମନେକଲେ ।

ସିଦ୍ଧାର୍ଥ ଯେଉଁଠାରେ ଥିଲେ, ସେ ସେଠାକୁ ଝଟ ସଟ ଯାଇ କହିଲେ, "କୁମାର, ତୁମେ ମୋତେ କାହିଁକି ଲଜ୍ଜା ଦେଉଛ ? କାହିଁକି ଏପରି ଭିକ୍ଷାବୃତ୍ତି କରୁଛ ? ଏଠାରେ କ'ଣ ତୁମର ଭିକ୍ଷୁମାନଙ୍କୁ ଖାଇବାକୁ ମିଳିବ ନାହିଁ ?" ବୁଦ୍ଧ ଉତ୍ତର ଦେଲେ, "ମହାରାଜ, ଏ ହେଉଛି ଆମର କୁଳାଚାର ।" ରାଜା ଶୁଦ୍ଧୋଦନ ରାଗିଯାଇ କହିଲେ "କ'ଣ ଏ ତୁମର କୁଳାଚାର ! ତୁମର ବଂଶ କ୍ଷତ୍ରିୟ ବଂଶ; ରାଜବଂଶ । କ୍ଷତ୍ରିୟ କେବେ ଭିକ୍ଷାବୃତ୍ତି କରେ ନାହିଁ ।" ବୁଦ୍ଧ ଧୀର ସ୍ୱରରେ ଉତ୍ତର ଦେଲେ, "ମହାରାଜ, ମୋର ବଂଶ ବୁଦ୍ଧର ବଂଶ । କ୍ଷତ୍ରିୟର ବଂଶ ନୁହେଁ; ରାଜାର ବଂଶ ନୁହେଁ । ତେଣୁ ସନ୍ନ୍ୟାସୀର ଆଚରଣ ଓ ଭିକ୍ଷାଟନ ମୋର ଧର୍ମ ।"

ପରଦିନ ରାଜପ୍ରାସାଦରେ ବୁଦ୍ଧଙ୍କର ଭୋଜନର ନିମନ୍ତ୍ରଣ ରହିଲା । ସେ ଶିଷ୍ୟମାନଙ୍କ ଗହଣରେ ଯାଇ ରାଜପ୍ରାସାଦରେ ଭୋଜନ କରିବା ପରେ ପ୍ରାସାଦବାସୀ ସ୍ତ୍ରୀ ପୁରୁଷ ସମସ୍ତେ ଆସି ତାଙ୍କର ଅଭିବାଦନ କଲେ ଏବଂ ତାଙ୍କଠାରୁ ଧର୍ମ ଉପଦେଶ ଶୁଣିଲେ । ମାତ୍ର କେବଳ ରାଜକୁମାରୀ ଯଶୋଧାରା ଆସିଲେ ନାହିଁ । ପରିଚାରିକାମାନେ ଯେତେବେଳେ ଯଶୋଧାରାଙ୍କୁ ଯିବାପାଇଁ ଅନୁରୋଧ କଲେ, ସେ କହିଲେ, "ମୁଁ ଯିବି ନାହିଁ । ଯଦି ମୋର ଗୁଣ ଥିବ, ତା'ହେଲେ କୁମାର ମୋ ପାଖକୁ ଆସିବେ ।"

ସମସ୍ତଙ୍କ ଅଭିବାଦନ ଗ୍ରହଣ କରିବା ପରେ ବୁଦ୍ଧ ଯଶୋଧାରାଙ୍କୁ ନ ଦେଖି ତାଙ୍କ ସାଙ୍ଗରେ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କୁ ନେଇ ଯଶୋଧାରାଙ୍କ ଶୟନ କକ୍ଷକୁ ଗଲେ ଏବଂ "ରାଜକନ୍ୟା ଯେପରି ଅଭ୍ୟର୍ଥନା କରିବାକୁ ଚାହାନ୍ତି, କରନ୍ତୁ" ବୋଲି କହି ସେଠାରେ ବିଛାହୋଇଥିବା ଆସନ ଉପରେ ବସିଗଲେ । କୁମାରୀ ଯଶୋଧାରାଙ୍କର ମନର କାମନା ପୂର୍ଣ୍ଣହେଲା । ସେ ଦୁଇ-

ହାତରେ ବୁଦ୍ଧଙ୍କର ପଦ୍ମମୂଳକ ଧରି ଆନନ୍ଦାଶ୍ରୁରେ ଧୋଇ ଦେଲେ । ବୁଦ୍ଧ ରାଜପ୍ରାସାଦ ଛାଡ଼ିଯିବା ଦିନଠାରୁ ସେ କପରି ରାଜଅନ୍ତଃପୁରରେ ଥାଇ ମଧ୍ୟ ସନ୍ନ୍ୟାସିନୀର ଜୀବନ ଯାପନ କରୁଛନ୍ତି, ତାହା ରାଜା ଶୁଦ୍ଧୋଦନ ବୁଦ୍ଧଙ୍କ ନିକଟରେ ବର୍ଣ୍ଣନା କରିଥିଲେ ।

କପିଳବାସ୍ତୁରେ ରହିବାର ତୃତୀୟ ଦିନ ରାଜକୁମାର ନନ୍ଦଙ୍କର ଅଭିଷେକ ଉତ୍ସବ ହେବାର ଥିଲା । ରାଜକୁମାର ନନ୍ଦ ରାଣୀ ମହାପ୍ରଜାପତିଙ୍କ ପୁତ୍ର ଓ ବୁଦ୍ଧଙ୍କର ସାବତ ଭାଇ । ସେ ଦିନ ବୁଦ୍ଧ ରାଜପ୍ରାସାଦକୁ ଭିକ୍ଷା କରିବା ପାଇଁ ଯାଇଥିଲେ । ନନ୍ଦଙ୍କ ହାତରେ ସେ ଭିକ୍ଷାପାତ୍ରଟି ଦେଇ ପ୍ରାସାଦବାସୀଙ୍କୁ ଧର୍ମକଥା କହୁଥିଲେ । ଆସିଲା ବେଳେ ନନ୍ଦଙ୍କ ହାତରୁ ଆଉ ପାତ୍ରଟି ନ ଆଣି ଚାଲି ଆସିଲେ । ନନ୍ଦ ମଧ୍ୟ ପାତ୍ରଟି ତାଙ୍କ ହାତରେ ବଢ଼ାଇ ଦେବାକୁ ସଂକୋଚ ବୋଧକରି ତାଙ୍କ ସାଙ୍ଗେ ସାଙ୍ଗେ ପାତ୍ରଟି ଧରି ଆସିଲେ—କେତେବେଳେ ତାଙ୍କର ମନେପଡ଼ିଲେ ଦେଇଦେବେ । ବୁଦ୍ଧ ନଗର ସୀମାନ୍ତରେ ଯେଉଁ ନ୍ୟଗ୍ରୋଧ ବିହାରରେ ରହୁଥିଲେ, ସେଠାରେ ପହଞ୍ଚି ଦେଖିଲେ ସେ ନନ୍ଦ ପାତ୍ର ଧରି ତାଙ୍କ ସଙ୍ଗେ ସଙ୍ଗେ ଆସୁଛନ୍ତି । ପଚାରିଲେ, "ନନ୍ଦ, ତୁମେ କ'ଣ ମୋ ସାଙ୍ଗରେ ରହି ସନ୍ନ୍ୟାସୀ ହେବ ?" ନନ୍ଦ ମନା କରି ନ ପାରି କହିଲେ, "ହଁ" । ଏହିପରି ଅଭିଷେକ ଦିନରେ ନନ୍ଦ ସନ୍ନ୍ୟାସୀ ହୋଇଗଲେ ।

ବୁଦ୍ଧ କପିଳବାସ୍ତୁରେ ରହିବାର ସପ୍ତମ ଦିନରେ ଅନୁରୂପ ଏକ କୌତୁହଳପ୍ରଦ ଘଟଣା ଘଟିଗଲା । ବୁଦ୍ଧ ଏ ପର୍ଯ୍ୟନ୍ତ ତାଙ୍କର ପୁତ୍ର ରାହୁଲକୁ ଦେଖି ନ ଥିଲେ । ରାହୁଲ ମଧ୍ୟ ତା'ର ପିତାଙ୍କୁ ଦେଖି ନ ଥିଲା । ଦିନେ ବୁଦ୍ଧ ଭିକ୍ଷା କରିବାକୁ ଯାଇ ରାଜପ୍ରାସାଦରେ ତାଙ୍କ ଶିଷ୍ୟମାନଙ୍କ ଗହଣରେ ବସିଛନ୍ତି, ଯଶୋଧାରା କୁମାର ରାହୁଲକୁ ଡାକି କହିଲେ, "ରାହୁଲ, କେଉଁ ଏ ହଜାର ସନ୍ନ୍ୟାସୀଙ୍କ ମଧ୍ୟରେ ସୁନାରଙ୍ଗର ଯେଉଁ ସନ୍ନ୍ୟାସୀ ବସିଥିବେ, ସେ ତୋର ପିତା । ତାଙ୍କୁ ଯାଇ କହ, 'ମୁଁ ତୁମର ପୁତ୍ର । ମୋତେ ପୁତ୍ରର ଅଧିକାର ଦିଅ' ।" ଯେପରି ଭାବରେ ଯଶୋଧାରା କହିଥିଲେ, ରାହୁଲ ଠିକ୍ ସେହିପରି ଭାବରେ ବୁଦ୍ଧଙ୍କ ଆଗରେ ଯାଇ ଠିଆ ହୋଇ କହିଲେ । ପ୍ରଥମେ ବୁଦ୍ଧ ନ ଶୁଣି ଚାଲିଗଲେ । ମାତ୍ର ରାହୁଲ ତାଙ୍କର ପଛେ ପଛେ ଯାଇ କହିବାକୁ

ଲାଗିଲେ, "ହେ ଶ୍ରମଣ, ମୋତେ ପୁତ୍ରର ଅଧିକାର ଦିଅ।" ବୁଦ୍ଧ ମନେ ମନେ ଭାବିଲେ, ସେ ପୁତ୍ରକୁ କି ଅଧିକାର ଦେବେ। ସେ ରାଜା ନୁହନ୍ତି କି ତାଙ୍କର ଧନଦୌଲତ ନାହିଁ । ଏ ରାଜତ୍ୱ ଓ ଏ ଧନଦୌଲତ ମଧ୍ୟ ଅସ୍ଥାୟୀ। ତେଣୁ ପୁତ୍ରକୁ ସେ ତାଙ୍କର ସନ୍ନ୍ୟାସର ଅଧିକାର ଦେବେ । ଏହା ମନେ ମନେ ସ୍ଥିର କରି ସେ ସାରିପୁତ୍ରଙ୍କୁ ଡାକି ରାହୁଲଙ୍କୁ ସନ୍ନ୍ୟାସର ଦୀକ୍ଷା ଦେବା ପାଇଁ ଆଦେଶ ଦେଲେ।

ନନ୍ଦ ଏବଂ ରାହୁଲଙ୍କର ଦୀକ୍ଷା ସମ୍ବାଦ ପାଇ ରାଜା ଶୁଦ୍ଧୋଦନଙ୍କର ହୃଦୟ ଭାଙ୍ଗି ପଡ଼ିଲା । ଯେଉଁଠାରେ ବୁଦ୍ଧ ରହୁଥିଲେ, ସେ ସେଠାକୁ ଯାଇ କହିଲେ, "ସିଦ୍ଧାର୍ଥ, ତୁମେ ମୋର ଗୋଟିଏ କଥା ରକ୍ଷାକର । ତୁମେ ସନ୍ନ୍ୟାସୀ ହୋଇଯିବା ପରେ ମୁଁ ଦୁଃଖରେ ଭାଙ୍ଗିପଡ଼ିଲି । କୁମାର ନନ୍ଦ ଉପରେ ମୋର ଆଶା ଭରସା ଥିଲା । ତାକୁ ମଧ୍ୟ ତୁମେ ସନ୍ନ୍ୟାସୀର ଦୀକ୍ଷା ଦେଲ । ଶେଷକୁ ଏହି ବାଳକକୁ ମଧ୍ୟ ତୁମେ ଛାଡ଼ିଲ ନାହିଁ । ମୋର ଅନୁରୋଧ, ଏଣିକି ମାତାପିତାଙ୍କ ଅନୁମତି ବିନା ଏପରି ବାଳକ ପୁତ୍ରକୁ ତୁମେ ଦୀକ୍ଷା ଦେବ ନାହିଁ ।" ବୁଦ୍ଧ ରାଜା ଶୁଦ୍ଧୋଦନଙ୍କୁ ସମ୍ମତି ଦେଲେ ।

କପିଳବାସ୍ତୁରେ ଅବସ୍ଥାନ କାଳରେ ବୁଦ୍ଧଙ୍କର ବହୁ ବାଲ୍ୟବନ୍ଧୁ ଓ ସମ୍ଭ୍ରାନ୍ତ ବଂଶୀୟ ଯୁବକ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଥିଲେ। ଏମାନଙ୍କ ମଧ୍ୟରେ ଆନନ୍ଦ, ଅନୁରୁଦ୍ଧ, ଉପାଳି, ଦେବଦତ୍ତ ପ୍ରଧାନ । ପରବର୍ତ୍ତୀ କାଳରେ ଆନନ୍ଦ ବୁଦ୍ଧଙ୍କର ପ୍ରିୟତମ ଶିଷ୍ୟ ହୋଇ ପାରିଥିଲେ ଏବଂ ବୁଦ୍ଧଙ୍କର ମୃତ୍ୟୁ ପର୍ଯ୍ୟନ୍ତ ସେ ତାଙ୍କର ସହଚର ଥିଲେ । ଅନୁରୁଦ୍ଧ ଓ ଉପାଳି ମଧ୍ୟ ବୁଦ୍ଧଙ୍କର ପ୍ରଧାନ ବାରଜଣ ଶିଷ୍ୟଙ୍କ ମଧ୍ୟରେ ଅନ୍ୟତମ ଥିଲେ। ଉପାଳି ଜାତିରେ ନାପିତ ଥିଲେ ଏବଂ ଶାକ୍ୟବଂଶର ସେବାକାର୍ଯ୍ୟରେ ପ୍ରଥମେ ନିଯୁକ୍ତ ହୋଇଥିଲେ । ମାତ୍ର ରାଜକୁମାରମାନଙ୍କ ସହିତ ସେ ମଧ୍ୟ ବୁଦ୍ଧଙ୍କର ଦୀକ୍ଷା ଗ୍ରହଣ କରିଥିଲେ। ପରବର୍ତ୍ତୀ କାଳରେ ନିଜର ଜ୍ଞାନ ଓ ସାଧନା ବଳରେ ସେ ଖୁବ୍ ସମ୍ମାନିତ ହୋଇପାରିଥିଲେ ।

ମାତ୍ର ଦେବଦତ୍ତ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ମଧ୍ୟ ସେ ବୁଦ୍ଧଙ୍କ ପ୍ରତି ତାଙ୍କର ଈର୍ଷାଭାବ କେବେ ଛାଡ଼ି ପାରି ନ ଥିଲେ ।

# ପ୍ରଚାରକ ଜୀବନ

ଗୌତମ ବୁଦ୍ଧ କପିଳବାସ୍ତୁ ଛାଡ଼ି ରାଜଗୃହ ଯାତ୍ରା କରିଥିଲେ ଏବଂ ସେଠାରେ କିଛିକାଳ କଟାଇବା ପରେ ସେ କୋଶଳ ରାଜ୍ୟର ରାଜଧାନୀ ଶ୍ରାବସ୍ତି ନଗରକୁ ଯାଇଥିଲେ । ସେତେବେଳକୁ ତାଙ୍କୁ ୩୭ ବର୍ଷ ବୟସ । ଯେଉଁ ଧର୍ମ ପରେ ବହୁ-ବିସ୍ତୃତ ହେଲା, ତତ୍କାଳୀନ ଭାରତବର୍ଷରେ ସେହି ଧର୍ମର ମୂଳଦୁଆ ମାତ୍ର ସେ ପକାଇଥାଆନ୍ତି । ତାଙ୍କର ସନ୍ନ୍ୟାସୀ ବା ଶ୍ରମଣ ଜୀବନର ଏହା ଆରମ୍ଭ ମାତ୍ର । ଜୀବନର ଅନ୍ତର ୪୩ ବର୍ଷ ସମସ୍ତ ଥାଏ ।

ଏହି ୪୩ ବର୍ଷକାଳ ସେ ଉତ୍ତର ଭାରତରେ ବିଭିନ୍ନ ଅଞ୍ଚଳରେ ଭ୍ରମଣ କରିଥିଲେ । ସେତେବେଳେ ଉତ୍ତର ଭାରତରେ ଷୋଳଟି ରାଜ୍ୟ ବା ଜନପଦ ଥିଲା—କାଶୀ, କୋଶଳ, ଅଙ୍ଗ, ମଗଧ, ବଜ୍ଜୀ, ମଲ୍ଲ, ଚେଦୀ, ବତ୍ସ, କୁରୁ, ପଞ୍ଚାଳ, ମତ୍ସ୍ୟ, ଶୂରସେନ, ଅଶ୍ମକ, ଅବନ୍ତୀ, ଗାନ୍ଧାର ଓ କାମ୍ବୋଜ । ଗାନ୍ଧାର ଓ କାମ୍ବୋଜକୁ ଛାଡ଼ିଦେଲେ ବାକୀ ସବୁ ରାଜ୍ୟ ପଶ୍ଚିମରେ ଯମୁନା ଓ ପୂର୍ବରେ ଫୁଗୁଳ ନଦୀ ମଝିରେ ଥିଲା । ଏହାର ଉତ୍ତରରେ ହିମାଳୟ ପର୍ବତ ଓ ଦକ୍ଷିଣରେ ବିନ୍ଧ୍ୟ ପର୍ବତ । ଏହି ଅଞ୍ଚଳକୁ ମଧ୍ୟଦେଶ ବୋଲି କୁହାଯାଉଥିଲା ଏବଂ ଏହାରି ମଧ୍ୟରେ ବୁଦ୍ଧ ଭ୍ରମଣ କରୁଥିଲେ । ସେ ପୂର୍ବ ଦିଗରେ କଜଙ୍ଗଲ ନିଗମ ବା ବର୍ତ୍ତମାନର ସାନ୍ତାଲ ପ୍ରଗଣା ପର୍ଯ୍ୟନ୍ତ ଆସିଥିଲେ ଏବଂ ପଶ୍ଚିମରେ କୁରୁ ବା ବର୍ତ୍ତମାନର ଦିଲ୍ଲୀ ଓ ପଞ୍ଜାବର କେତେକ ଅଞ୍ଚଳ ପର୍ଯ୍ୟନ୍ତ ଯାଇଥିଲେ ।

ଏହି ଉତ୍ତର ବା ମଧ୍ୟଦେଶରେ ସେତେବେଳେ ବହୁ ରାଜତନ୍ତ୍ର ରାଜ୍ୟ ଥିଲା ଏବଂ ସେମାନେ ପରସ୍ପରର ରାଜ୍ୟ ବିସ୍ତାର କରିବାକୁ ଉଦ୍ୟମ

କରୁଥିଲେ । ମଉର୍ଯ୍ୟବର୍ତ୍ତୀ କାଳରେ ଯେଉଁ ବଡ଼ ବଡ଼ ସାମ୍ରାଜ୍ୟର ବିସ୍ତାର ହୋଇଥିଲା, ତାହା ସେତେବେଳେ ଦେଖା ଯାଇ ନ ଥିଲା । ବହୁ ରାଜ୍ୟରେ ଗଣତନ୍ତ୍ର ଶାସନ ମଧ୍ୟ ଚାଲୁଥିଲା । ଏହି ସବୁ ରାଜ୍ୟରେ ବୁଦ୍ଧଙ୍କର ଶିଷ୍ୟ ଏବଂ ଉପାସକ ଥିଲେ ଏବଂ ସେ ଚକ୍ରବର୍ତ୍ତୀ ରାଜା ନ ହୋଇ ନିଃସ୍ୱ ସନ୍ନ୍ୟାସୀ ହୋଇଥିଲେ ମଧ୍ୟ, ତାଙ୍କର ନାମ ଜାଣି ନ ଥିବା ଲୋକ ସେତେବେଳେ ଖୁବ୍ କମ୍ ଥିଲେ । କେତେ ରାଜମୁକୁଟ ତାଙ୍କ ଆଗରେ ନଇଁପଡ଼ୁଥିଲା । କେତେ ଧନାଢ୍ୟ ବଣିକ ତାଙ୍କ ଉଦ୍ଦେଶ୍ୟରେ ସର୍ବସ୍ୱ ଦାନ କରି ନିଃସ୍ୱ ହେଉଥିଲେ ।

ସେତେବେଳେ ଉତ୍ତର ଭାରତରେ ଜଣେ ପ୍ରସିଦ୍ଧ ଶ୍ରେଷ୍ଠୀ ବା ବଣିକ ବୁଦ୍ଧଙ୍କ ପାଇଁ କିପରି ତାଙ୍କର ଭଣ୍ଡାର ଶୂନ୍ୟ କରିଦେଇଥିଲେ, ସେ ସମ୍ପର୍କରେ ଏକ ସୁନ୍ଦର କାହାଣୀ ଅଛି । ସେତେବେଳେ ଶ୍ରାବସ୍ତି ପ୍ରସିଦ୍ଧ କୋଶଳ ରାଜ୍ୟର ରାଜଧାନୀ ଥିଲା ଏବଂ ଏହି ଶ୍ରାବସ୍ତି ନଗରରେ ଉତ୍ତର ଭାରତର ଶ୍ରେଷ୍ଠ ବଣିକ ଅନାଥ ପିଣ୍ଡିକ ବାସ କରୁଥିଲେ । ବୁଦ୍ଧ ଯେତେବେଳେ କପିଳବାସ୍ତୁରୁ ଫେରି ରାଜଗୃହରେ ଥିଲେ, ଅନାଥ ପିଣ୍ଡିକ ନିଜର ବ୍ୟବସାୟ କାର୍ଯ୍ୟରେ ରାଜଗୃହ ଯାଇଥିଲେ । ବୁଦ୍ଧଙ୍କର ନାମ ଶୁଣି ସେ ତାଙ୍କର ସାକ୍ଷାତ କରିଥିଲେ ଏବଂ ଏହାର ପ୍ରବଚନ ଅଛି ଯେ, ନିର୍ମଳ ବସ୍ତ୍ରରେ ରଙ୍ଗ ଦେଲେ ତାହା ଯେପରି ଉଜ୍ଜ୍ୱଳ ଧରିଯାଏ, ବୁଦ୍ଧଙ୍କର ପ୍ରବଚନ ଅନାଥ ପିଣ୍ଡିକଙ୍କ ମନ ଓ ହୃଦୟରୁ ସେହିପରି ଅଭିଭୂତ କରିଦେଲା । ସେ କୃତାଞ୍ଜଳିପୂର୍ବକ ବୁଦ୍ଧଙ୍କର ଉପାସକ (ଗୃହୀ ଶିଷ୍ୟ) ବୋଲି ନିଜକୁ ଘୋଷଣା କଲେ ଏବଂ ଶ୍ରାବସ୍ତି ଯିବାପାଇଁ ତାଙ୍କୁ ଏବଂ ଭିକ୍ଷୁ ସଂଘକୁ ନିମନ୍ତ୍ରଣ କଲେ ।

ବୁଦ୍ଧ ନିମନ୍ତ୍ରଣ ଗ୍ରହଣ କରିବା ପରେ ଅନାଥ ପିଣ୍ଡିକ ଶ୍ରାବସ୍ତି ଫେରି ଆସି ମନେ ମନେ ଚିନ୍ତା କଲେ, ସେ ବୁଦ୍ଧଙ୍କୁ କ'ଣ ଉପହାର ଦେବେ । ବହୁ ଚିନ୍ତା କରି ସେ ସ୍ଥିର କଲେ ଯେ, ଏହିପରି ଏକ ସ୍ଥାନ ଉପହାର ଦେବେ, ଯେଉଁଠାରେ ବୁଦ୍ଧ ବର୍ଷାର କିଛି ସମୟ ରହିପାରିବେ । ତାହା ଏକ ରମଣୀୟ ସ୍ଥାନ ହୋଇଥିବା ଦରକାର । ନଗରର ବହୁତ ଦୂରରେ ବା ବହୁତ ନିକଟରେ ହୋଇ ନଥିବା ଦରକାର, ଯେପରିକି ଲୋକେ ଇଚ୍ଛା କଲେ ଚାଲି ଯାଇ ବୁଦ୍ଧଙ୍କର ଦର୍ଶନ ଲାଭ କରିପାରିବେ । ଦିନରେ କମ୍ ଭିଡ଼ ଓ ରାତିରେ ନିଃଶବ୍ଦ

ହୋଇଥିବା ଆବଶ୍ୟକ । ଶ୍ରାବସ୍ତିର ନିକଟରେ ଜେତବନ ନାମରେ ଏହିପରି ଏକ ସୁନ୍ଦର ଉଦ୍ୟାନ ଥିଲା । ଏହି ଉଦ୍ୟାନର ମାଲିକ ଥିଲେ ରାଜକୁମାର ଜେତ । ରାଜକୁମାରଙ୍କଠାରୁ ଏହି ଉଦ୍ୟାନ କିଣି ନେବାପାଇଁ ସ୍ଥିର କରି ଅନାଥ ପିଣ୍ଡିକ ତାଙ୍କ ପାଖରେ ପହଞ୍ଚିଲେ । ଏ ଉଦ୍ୟାନ ପ୍ରତି ରାଜକୁମାରଙ୍କର ଏତେ ଲୋଭ ଥିଲା ଯେ ସେ ଏହାକୁ ଛାଡ଼ିବା ପାଇଁ ପ୍ରସ୍ତୁତ ନ ଥିଲେ । ତେଣୁ ଅନାଥ ପିଣ୍ଡିକ ଯେପରି ଏହାକୁ ନେବାକୁ ଆକୃଷ୍ଟ ନ ହେବେ, ସେଥିପାଇଁ କହିଲେ, "ତୁମେ ଯଦି ମୋର ଏ ଉଦ୍ୟାନ କିଣି ନେବାକୁ ଚାହଁ, ତା'ହେଲେ ଉଦ୍ୟାନର ଭୂମିରେ ସୁନାର ମୋହର ବିଛାଇ ଦିଅ, ଯେପରିକି ଇଞ୍ଚେ ମାତ୍ର ସ୍ଥାନ ଖାଲି ରହିବ ନାହିଁ । ଏତିକି ସୁନାର ମୋହର ଦେଇପାରିବ ତ ଏ ଉଦ୍ୟାନକୁ କିଣିନେବ ।"

ଅନାଥ ପିଣ୍ଡିକ ସଙ୍ଗେ ସଙ୍ଗେ ନିଜ ଘରେ ଯେତେ ସୁନାର ମୋହର ଥିଲା ଏ ଜମି ଉପରେ ବିଛାଇ ଦେଲେ । ଜମିର ପ୍ରାୟ ସବୁ ଅଂଶ ସୁନାର ମୋହରରେ ପୂର୍ଣ୍ଣ ହୋଇଗଲା । ମାତ୍ର ଅଳ୍ପ କିଛିଏ ଅଂଶ ରହିଗଲା । ଜେତ ରାଜକୁମାର ଏହା ଦେଖି ଅବାକ । ଯାହାଙ୍କ ପାଇଁ ଜଣେ ବଣିକ ଏପରି ନିଃସ୍ୱ ହୋଇପାରେ, ସେ କେତେ ବଡ଼ ମହାପୁରୁଷ—ଏହା ଚିନ୍ତା କରି ସେ ଲଜ୍ଜିତ ହେଲେ ଏବଂ ଅନାଥ ପିଣ୍ଡିକଙ୍କୁ କହିଲେ, "ଶ୍ରେଷ୍ଠୀ, ଯେଉଁ ଜମିଟିକକ ବାକି ପଡ଼ିଲା, ତାହା ଭଗବାନ ବୁଦ୍ଧଙ୍କୁ ଦେବା ପାଇଁ ମୋତେ ଅନୁମତି ଦିଅ ।"

ଏହି ଜେତବନ ବୁଦ୍ଧଙ୍କର ଏକ ପ୍ରିୟ ବିହାରସ୍ଥଳୀ ଥିଲା । ବୌଦ୍ଧ ଧର୍ମଶାସ୍ତ୍ରରେ ବୁଦ୍ଧଙ୍କର ଧର୍ମ ପ୍ରଚାର ସମ୍ପର୍କରେ ଯେତେ ଅଧ୍ୟାୟ ଲେଖା ହୋଇଛି, ତା' ମଧ୍ୟରୁ ବହୁ ଅଧ୍ୟାୟର ଆରମ୍ଭ ଏହିପରି ଭାବରେ ହୋଇଛି—"ମୁଁ ଶୁଣିଛି, ଏହି ସମୟରେ ଭଗବାନ ବୁଦ୍ଧ ଶ୍ରାବସ୍ତିରେ ଅନାଥ ପିଣ୍ଡିକଙ୍କର ଆରାମ ଜେତବନରେ ବିହାର କରୁଥିଲେ ।" ମାତ୍ର କେବଳ ଜେତବନ ନୁହେଁ, ଉତ୍ତର ଭାରତର ସବୁ ପ୍ରସିଦ୍ଧ ନଗରୀର ଉପକଣ୍ଠରେ ଥିବା ବହୁ ବନ ଓ ଉପବନ ଗୌତମ ବୁଦ୍ଧ ଓ ଭିକ୍ଷୁ ସଂଘକୁ ସେତେବେଳର ରାଜା ମହାରାଜା ଓ ଧନୀ ବଣିକମାନେ ଦାନ କରିଥିଲେ ।

ବୁଦ୍ଧଙ୍କର ଭ୍ରମଣ ଜୀବନରେ ଘର ବୋଲି ଯଦି କିଛି ଥିଲା, ତା'ହେଲେ ସେ ଏହିସବୁ ବନ ଓ ଉପବନ । ଅନାଥ ପିଣ୍ଡିକଙ୍କର ଜେତବନ ପରି ରାଜଗୃହର ବେଣୁବନ, ଶ୍ରାବସ୍ତିର ପୂର୍ବାରାମ, କପିଳବସ୍ତୁର ନ୍ୟଗ୍ରୋଧାରାମ, କୌଶାମ୍ବୀର ଘୋଷିତାରାମ, ନାଳନ୍ଦାର ଅମ୍ରବନ, ଭର୍ଗ ଦେଶର ଭଲାବନ ପ୍ରଭୃତି ବୁଦ୍ଧଙ୍କର ପ୍ରସିଦ୍ଧ ବିହାରସ୍ଥଳୀ ଥିଲା । ଏହି ଉପବନମାନଙ୍କରେ ସୁନ୍ଦର ସୁନ୍ଦର ପଦ୍ମଫୁଲର ପୁଷ୍କରିଣୀ, ଶୟନକକ୍ଷ, ସଭାଗୃହ, ଭଣ୍ଡାର ଘର, ପାଠାଗାରମାନ ଥିଲା । ଶାଳ, ଅଶ୍ୱତ୍ଥ ଓ ଅମ୍ବ ଗଛମାନ ଛାୟାଦାନ କରୁଥିଲେ । ପ୍ରକୃତିର ସୌନ୍ଦର୍ଯ୍ୟ ଓ ନିର୍ଜନତା ମଧ୍ୟରେ ଧ୍ୟାନ ଏବଂ ଉପାସନା କରିବା ପାଇଁ ଏହା ଉପଯୁକ୍ତ ସ୍ଥାନ ଥିଲା ।

ଗୌତମ ବୁଦ୍ଧ ତାଙ୍କର ଭିକ୍ଷୁମାନଙ୍କ ସହିତ ଏହିସବୁ ସ୍ଥାନରେ ବର୍ଷା ଋତୁମାସ କଟାଉଥିଲେ । ପରିବ୍ରାଜକ ଜୀବନରେ ଏହି ଋତୁମାସ ଥିଲା କେବଳ ବିଶ୍ରାମର ସମୟ । ପ୍ରବଳ ବର୍ଷାରେ ରାସ୍ତାଘାଟ କର୍ଦ୍ଦମାକ୍ତ ହୋଇ ପଡୁଥିଲା । ନଦୀନାଳ ବନ୍ୟାରେ କୂଳ ଲଙ୍ଘି ବହୁଥିଲା । ଏ ଗାଁରୁ ସେ ଗାଁ ଓ ଗାଁରୁ ସହରକୁ ଯିବା ସମ୍ଭବ ହେଉ ନ ଥିଲା । ବୌଦ୍ଧ ଶାସ୍ତ୍ରରେ ଏହିପରି ଏକ ପ୍ରବଚନ ଅଛି ଯେ "ଘୋର ବର୍ଷାକାଳରେ ପକ୍ଷୀମାନେ ଗଛର ଗହଳିଆ ଶିଖରେ ବସା ବାନ୍ଧି ଲୁଚନ୍ତି ।" ବର୍ଷାବାସ ପାଇଁ ବୁଦ୍ଧଙ୍କୁ ବହୁ ଅଞ୍ଚଳରୁ ନିମନ୍ତ୍ରଣ ମିଳୁଥିଲା । ରାଜା ମହାରାଜା ଓ ଧନୀ ବଣିକମାନେ ତାଙ୍କୁ ଏହି ଋତୁମାସ ଅତିଥିରୂପେ ଲାଭ କରିବା ପାଇଁ ବ୍ୟାକୁଳ ଥିଲେ ଏବଂ ବୁଦ୍ଧଙ୍କୁ ଅତିଥିରୂପେ ଲାଭକରି ଏହା ତାଙ୍କର ଆଶୀର୍ବାଦ ବୋଲି ମନେ କରୁଥିଲେ ।

ବର୍ଷା ଋତୁ ଶେଷ ହୋଇଗଲେ ପୁଣି ବୁଦ୍ଧଙ୍କର ପରିବ୍ରାଜକ ଜୀବନ ଆରମ୍ଭ ହେଉଥିଲା । ଖୁବ୍ ଭୋରରୁ ବୁଦ୍ଧ ଏବଂ ତାଙ୍କର ଶିଷ୍ୟମାନେ ଶଯ୍ୟା ତ୍ୟାଗ କରୁଥିଲେ । ସକାଳର ଏହି ସମୟଟି ଧ୍ୟାନ ବା ଧର୍ମଚର୍ଚ୍ଚାରେ କଟୁଥିଲା । ତା'ପରେ ଭିକ୍ଷୁମାନଙ୍କ ସହିତ ନିକଟବର୍ତ୍ତୀ ସହର ବା ଗ୍ରାମକୁ ସେ ଭିକ୍ଷା କରିବାପାଇଁ ଯାଉଥିଲେ । ଭିକ୍ଷା କରିବା ସମୟରେ ସେ ତଳକୁ ମୁହଁ ପୋତି ଯାଉଥିଲେ ଏବଂ କାହାରିକୁ କିଛି ମାଗୁ ନ ଥିଲେ । ଯାହା ଭିକ୍ଷା ପାତ୍ରରେ

ପଡ଼ୁଥିବ, ତାହା ଦିନର ଆହାର ପାଇଁ ଯଥେଷ୍ଟ ମନେକରି ସେ ଫେରି-ଆସୁଥିଲେ । ଦିନେ ଦିନେ ଭୋଜନର ନିମନ୍ତ୍ରଣ ମିଳୁଥିଲା । ଦିନରେ ଏହି ଥରେ ମାତ୍ର ସେ ଭୋଜନ କରୁଥିଲେ । ମଧ୍ୟାହ୍ନ ସମୟରେ ବିଶ୍ରାମ କରୁଥିଲେ । ଏହି ସମୟଟିକ ନିର୍ଜନ ପ୍ରକୋଷ୍ଠ ମଧ୍ୟରେ ବା ବୃକ୍ଷର ସୁଶୀତଳ ଛାୟାରେ ସେ ଧ୍ୟାନରତ ହୋଇ ବା ସଦ୍‌ଭାବନାରେ କଟାଉଥିଲେ । ସନ୍ଧ୍ୟା ହୋଇଗଲେ ଭିକ୍ଷୁ ସଙ୍ଘ ତାଙ୍କର ପ୍ରବଚନ ଶୁଣିବାପାଇଁ ଏକତ୍ର ହେଉଥିଲେ । ନାଗରିକମାନେ ତାଙ୍କର ଦର୍ଶନ ଲାଭପାଇଁ ଆସୁଥିଲେ । ତାଙ୍କର ସାକ୍ଷାତ ପାଇଁ ଓ ନିଜ ନିଜର ସନ୍ଦେହ ମୋଚନ ପାଇଁ ଦୂରଦୂରାନ୍ତରୁ ପରିବ୍ରାଜକ ଓ ଭିକ୍ଷୁମାନେ ଜମା ହେଉଥିଲେ । ସୂକ୍ଷ୍ମ ତର୍କ କରିବାପାଇଁ ଶ୍ରୋତ୍ରିୟ, ବ୍ରାହ୍ମଣ ଓ ଅନ୍ୟ ମତାବ-ଲମ୍ବୀମାନେ ଆସୁଥିଲେ । ଦିବସର ଶେଷ ସ୍ତର ଏହିପରି ଚର୍ଚ୍ଚା, ପ୍ରବଚନ ଓ ପ୍ରଶ୍ନୋତ୍ତରରେ ମୁଖରିତ ହୋଇ ଉଠୁଥିଲା । ତା'ପରେ ରାତ୍ରିର ନିର୍ଜନତା ଓ ବିଶ୍ରାମ ।



ପ୍ରବୁଦ୍ଧ ବୁଦ୍ଧ ଅବତାରେ
ଜ୍ଞାନ ବିସ୍ତାରେ ଏ ସଂସାରେ ।

(ଜଗନ୍ନାଥ ଦାସ, ଭାଗବତ)

ବୁଦ୍ଧଙ୍କର ପ୍ରଚାର ସେତେବେଳେ ଭାରତୀୟ ସମାଜକୁ ଦୋହଲାଇ ଦେଇଥିଲା । ସେ ଖୁବ୍ ସରଳ ଭାଷାରେ ଧର୍ମ ପ୍ରଚାର କରୁଥିଲେ । ହିନ୍ଦୁ ଧର୍ମଶାସ୍ତ୍ର ସଂସ୍କୃତ ଭାଷାରେ ଲେଖା ଓ ପଢ଼ା ଯାଉଥିବାରୁ ସାଧାରଣ ଲୋକେ ତାହା ବୁଝି ପାରୁ ନ ଥିଲେ । ବୁଦ୍ଧ ଏପରି ଭାଷାରେ ପ୍ରଚାର କଲେ, ଯାହା କି ଜନସାଧାରଣ ବୁଝି ପାରିବେ । ସାଧାରଣ ବୁଝିପାରିବା ଭଳି ଉଦାହରଣ ଦେଇ ସେ ଧର୍ମ ପ୍ରଚାର କରୁଥିଲେ । ସେ ଯେଉଁ ଭାଷାରେ ପ୍ରଚାର କରୁଥିଲେ, ତାହା ପାଲିଭାଷା ନାମରେ ଖ୍ୟାତ । ବୌଦ୍ଧ ଧର୍ମଗ୍ରନ୍ଥ ଓ ଶିଳାଲିପିମାନ ଏହି ଭାଷାରେ ଲେଖାଯାଇଛି ।

ଏହିକାଳ ପରି ସେତେବେଳର ସମାଜରେ ଜାତିଭେଦ ଓ ସ୍ପୃଶ୍ୟ ଅସ୍ପୃଶ୍ୟ ଭେଦଭାବ ଥିଲା । ବୁଦ୍ଧ କହୁଥିଲେ ଯେ, ଭଲଗୁଣ ଓ ମନ୍ଦଗୁଣ ସବୁ ଜାତିର ଲୋକଙ୍କଠାରେ ଅଛି । ଚେଷ୍ଟା କଲେ ସମସ୍ତେ ନିଜର ଭଲ ଗୁଣର ବିକାଶ କରି ପାରିବେ । ସେ ଏ ସମ୍ପର୍କରେ ଗୋଟିଏ ଉଦାହରଣ ଦେଇଥିଲେ । ଚାରିଜଣ ଲୋକ ଚାରି ପ୍ରକାର କାଠ ଆଣି ସେଥିରେ ନିଆଁ ଲଗାଇଲେ । ଜଣେ ଆମ୍ବ କାଠ ଆଣିଲା, ଆଉ ଜଣେ ପଣସ କାଠ, ଆଉ ଜଣେ ଶାଳ କାଠ ଓ ଆଉ ଜଣେ ଡ଼ିମିଗ ଚନ୍ଦନ କାଠ ଆଣିଲା । ଏଥିରେ ନିଆଁ ଲଗାଇ-

ବାଷ୍ଟୁ ଆମ୍ବ କାଠରୁ ଯେପରି ନିଆଁ ବାହାରିଲା, ଯେପରି ଆଲୁଅ ହେଲା ଓ ଗରମ ହେଲା, ପଣସ, ଶାଳ ଓ ଡିମିରି କାଠରୁ ମଧ୍ୟ ସେହିପରି ତେଜ, ସେହି-ପରି ଉତ୍ତାପ ଓ ଆଲୁଅ ବାହାରିଲେ । ସେହିପରି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ସ୍ୱର ଜାତିର ଲୋକ ସମାନ ଉପାଦାନରେ ଗଠିତ । କାଠର ଭିତରେ ତେଜସ୍କ୍ରିୟ ଶକ୍ତି ଅଛି । ଚେଷ୍ଟା କଲେ ତାହା ଯେପରି ଜଳି ଉଠୁଛି, ପ୍ରତ୍ୟେକ ଲୋକର ଶକ୍ତି ମଧ୍ୟ ଚେଷ୍ଟାର ଫଳରେ ବିକାଶ ଲାଭ କରି ପାରିବ ।

ବୁଦ୍ଧ ବହୁଥର ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟମାନଙ୍କ ସହିତ ମେହେନ୍ତର, ଶବର ଓ କୋଲ ଜାତି ଲୋକଙ୍କର ତୁଳନା କରିଛନ୍ତି ଏବଂ ମନୁଷ୍ୟତାର ମାପକାଠିରେ ଏମାନେ କୌଣସି ଗୁଣରେ କମ୍ ନୁହନ୍ତି ବୋଲି ପ୍ରମାଣିତ କରିଛନ୍ତି । ଥରେ ବେଦଜ୍ଞ ବ୍ରାହ୍ମଣ ଆଶ୍ୱଳାୟନ ନାମରେ ଜଣେ ବ୍ରାହ୍ମଣ ଯୁବକଙ୍କୁ ବୁଦ୍ଧଙ୍କ ସହିତ ତର୍କ କରିବାକୁ ପଠାଇଥିଲେ । ନାନା ଯୁକ୍ତି କରି ଶେଷକୁ ଏ ଯୁବକ କହିଲେ, "ଗୌତମ, ତୁମେ ଜ୍ଞାନର ପ୍ରଚାର କରୁଛ, ମାତ୍ର ସ୍ୱର ଜାତି ମଧ୍ୟରେ ଜ୍ଞାନ ବଳରେ ବ୍ରାହ୍ମଣମାନେ ଶ୍ରେଷ୍ଠ । ସେହିପରି ଉପର ତିନିଜାତି ଶୂଦ୍ରମାନଙ୍କଠାରୁ ଜ୍ଞାନ ଓ ବିଦ୍ୟାରେ ଅଧିକ ମାର୍ଜିତ ।"

ବୁଦ୍ଧ ତା'ର ଉତ୍ତର ଦେଇ ପଚାରିଲେ, "ଦୁଇଜଣ ବ୍ରାହ୍ମଣ ଯୁବକ ଅଛନ୍ତି—ଜଣେ ବେଶୀ ଜ୍ଞାନୀ, ଜଣେ ଅଶିକ୍ଷିତ । ଏ ଦୁଇଜଣଙ୍କ ମଧ୍ୟରୁ ତୁମେ କାହାକୁ ସମ୍ମାନ ଦେଖାଇବ ?"

"ଶିକ୍ଷିତ ବ୍ରାହ୍ମଣ ନିଶ୍ଚୟ ।"

ବୁଦ୍ଧ ପୁଣି ପଚାରିଲେ, "ଅଚ୍ଛା, ଏ ଦୁଇଜଣଙ୍କ ମଧ୍ୟରୁ ଶିକ୍ଷିତ ଯୁବକଟି ଅସଚ୍ଚରିତ୍ର ଓ ଅସତ୍କର୍ମରେ ଲିପ୍ତ । ଅଶିକ୍ଷିତ ଯୁବକଟି ଚରିତ୍ରବାନ ଓ ସତ୍କାର୍ଯ୍ୟରେ ଯୁକ୍ତ । ତୁମେ ଏ ଦୁଇଜଣଙ୍କ ମଧ୍ୟରୁ କାହାକୁ ସମ୍ମାନ ଦେଖାଇବ ?"

"ଅଶିକ୍ଷିତ ହେଲେ ମଧ୍ୟ ମଙ୍ଗଳ କାର୍ଯ୍ୟରେ ଯୁକ୍ତ ଏ ବ୍ରାହ୍ମଣ ଯୁବକକୁ ଆମେ ସମ୍ମାନ ଦେଖାଇବୁ । କାରଣ ଯେ ଅସତ୍ କାର୍ଯ୍ୟରେ ଲାଗିଛି, ତା'ର ବିଦ୍ୟାରେ ଆମର କି ଲାଭ ?"

"ହେଶ୍ୱ, ଅଶ୍ୱଳଯ୍ନ, ଜନ୍ମ ଅନୁସାରେ ଜାତିଭେଦର ଅର୍ଥ ନାହିଁ । ବିଦ୍ୟା ଅନୁସାରେ ଜାତିଭେଦର କୌଣସି ଅର୍ଥ ନାହିଁ । ଗୁଣ ଅନୁସାରେ ଯଦି ଜାତିଭେଦର ବିଚାର କରାଯାଏ, ସବୁ ଜାତିର ଗୁଣ ଅଛି । ସବୁ ଜାତିର ଲୋକଙ୍କ ଚରିତ୍ରକୁ ଉନ୍ନତ କରାଯାଇ ପାରେ ।"

ଯେ ବୁଦ୍ଧଙ୍କର ଶିଷ୍ୟ ହେଉଥିଲେ, ସେ ଜାତିଭେଦ ମାନୁ ନ ଥିଲେ । ଥରେ ସ୍ୱୟଂ ବୁଦ୍ଧ ତାଙ୍କର ଶିଷ୍ୟମାନଙ୍କୁ କହୁଥିଲେ, "ଭିକ୍ଷୁଗଣ, ଗଙ୍ଗା, ଯମୁନା, ଅଚିରବତୀ, ଶରୟୂ ପ୍ରଭୃତି ନଦୀମାନେ ଯେପରି ସମୁଦ୍ରରେ ମିଶିଯାଇ ନିଜର ନାମ ଏବଂ ଭେଦଠାରୁ ସେମାନେ ଭିନ୍ନ ହୋଇଥିଲେ ତାହା ଭୁଲିଯାନ୍ତି, ସେହିପରି ବୁଦ୍ଧଙ୍କର ଶିଷ୍ୟମାନଙ୍କୁ ନିଜର ପୂର୍ବ ଜାତି ଓ ଅଭିମାନକୁ ଭୁଲି ଯିବାକୁ ହୁଏ ।"

× × ×

ସେତେବେଳେ ମଧ୍ୟ ଯଜ୍ଞକର୍ମରେ ପଶୁବଳି ପ୍ରଚଳିତ ଥିଲା । ବୁଦ୍ଧ ଏହାର ଘୋର ବିରୋଧ କରୁଥିଲେ ଏବଂ ଯେଉଁଠାରେ ଏହିପରି ପଶୁବଳି ଦିଆ ଯାଉଥିବା କଥା ସେ ଶୁଣୁଥିଲେ, ସେଠାକୁ ଯାଇ ସେ ତାଙ୍କର ପ୍ରଭାବ ଦ୍ୱାରା ଯଜ୍ଞ କରୁଥିବା ରାଜା ଏବଂ ତାଙ୍କର ପୁରୋହିତମାନଙ୍କୁ ଏଥିରୁ ନିବୃତ୍ତ କରୁଥିଲେ ଏବଂ ପଶୁମାନଙ୍କୁ ମୁକୁଳାଇ ଦେଉଥିଲେ ।

ମଗଧର ରାଜା ବିମ୍ବିସାରଙ୍କର କୁଟଦନ୍ତ ନାମରେ ଜଣେ ପ୍ରସିଦ୍ଧ ବ୍ରାହ୍ମଣ ପୁରୋହିତ ଥିଲେ । କଥିତ ଅଛି ଯେ, ସେ ଥରେ ସାତଶହ ଗାଈ, ସାତଶହ ବାଛୁରି, ସାତଶହ ଛେଳି ଓ ସାତଶହ ମେଣ୍ଢାଙ୍କୁ ବଳି ଦେବାକୁ ନେଇ ଏକ ଯଜ୍ଞ କରୁଥିଲେ । ଏହି ସମ୍ବାଦ ପାଇ ଗୌତମ ବୁଦ୍ଧ ବ୍ରାହ୍ମଣଙ୍କ ଗ୍ରାମରେ ଉପସ୍ଥିତ ହେଲେ । ଏହି ଯଜ୍ଞଠାରୁ ଆହୁରି ଉତ୍କୃଷ୍ଟ ଯଜ୍ଞ ଅଛି ବୋଲି ସେ କହୁଥିଲେ । କୁଟଦନ୍ତ ସେ ଯଜ୍ଞ କ'ଣ ପଚାରିବାରୁ ବୁଦ୍ଧ କହିଲେ, "ଯେଉଁ ଯଜ୍ଞରେ ପଶୁ ବଧ କରା ନ ଯାଇ ଘିଅ, ତେଲ, ଦହି, ଦୁଧ, ଗୁଡ଼ ଓ ମହୁର ବ୍ୟବହାର କରାଯାଏ ଏବଂ ସେଥିରେ ନିଜର ପ୍ରିୟଜନମାନଙ୍କୁ ତୃପ୍ତ କରାଯାଏ, ସେ ଯଜ୍ଞ ଏହାଠାରୁ ଫଳପ୍ରଦ ।"

କୁଟଦେନ୍ତ ପଚ୍ଚାରିଲେ, "ଏହାଠାରୁ କ'ଣ ଫଳପ୍ରଦ ଯଜ୍ଞ ଅଛି ?"

ବୁଦ୍ଧ କହିଲେ, "ହଁ ଅଛି । ଯେ ଏପରି ଭାବରେ କାର୍ଯ୍ୟ କରେ, ଯାହା ଫଳରେ ଚୋରି କରେ ନାହିଁ, ହିଂସା କରେ ନାହିଁ, ବ୍ୟଭିଚାର କରେ ନାହିଁ, ମିଥ୍ୟା କହେ ନାହିଁ, ମଦ୍ୟପାନ କରେ ନାହିଁ, ସେ ଏହାଠାରୁ ଅଧିକ ଫଳ ଲାଭ କରେ ।"

କୁଟଦେନ୍ତ ପଚ୍ଚାରିଲେ, "ଏହାଠାରୁ କ'ଣ ଆହୁରି ଫଳପ୍ରଦ ଯଜ୍ଞ ଅଛି ?"

"ଅଛି ବ୍ରାହ୍ମଣ, ଯେ ନିଜର ଚେଷ୍ଟା ବଳରେ ବୁଦ୍ଧତ୍ୱ ବା ମହାଯଜ୍ଞ ଲାଭ କରିପାରେ, ତାହାର କାର୍ଯ୍ୟ ସବୁଠାରୁ ଉତ୍କୃଷ୍ଟ, ସବୁଠାରୁ ଫଳପ୍ରଦ ।"

× × ×

ସେତେବେଳେ ଭାରତରେ ଏପରି କେତେକ ଲୋକ ଥିଲେ, ଯେଉଁମାନେ ଆତ୍ମା ଅଛି କି ନାହିଁ, ଯଦି ଅଛି ମୃତ୍ୟୁପରେ ସେ କୁଆଡ଼େ ଯାଉଛି, ଈଶ୍ୱର ଅନନ୍ତ କି ନାହିଁ—ଏହିପରି ପ୍ରଶ୍ନର ଚର୍ଚ୍ଚାରେ ଲାଗିଥିଲେ । ଏହାର ଉତ୍ତର ଦେଇ ନ ପାରିଲେ ବୁଦ୍ଧଙ୍କୁ ସେମାନେ ମାନିବେ ନାହିଁ ବୋଲି କହୁଥିଲେ । ଯେଉଁମାନେ ବୁଦ୍ଧଙ୍କ ପାଖକୁ ଆସି ଏସବୁ ପ୍ରଶ୍ନ ପଚ୍ଚାରୁଥିଲେ, ସେ ତା'ର କୌଣସି ଉତ୍ତର ନ ଦେଇ ନିରୁତ୍ତର ରହୁଥିଲେ ।

ପରେ ବୁଦ୍ଧଙ୍କର ପ୍ରିୟ ଶିଷ୍ୟ ଆନନ୍ଦ ତାଙ୍କୁ ଯାଇ ପଚ୍ଚାରିଲେ, "ଆପଣ କାହିଁକି ଏହାର ଉତ୍ତର ଦେଉ ନାହାନ୍ତି ?"

ବୁଦ୍ଧ ଏ ସମ୍ପର୍କରେ ଦୁଇଟି ସୁନ୍ଦର ଉପାଖ୍ୟାନ କହିଥିଲେ । ଗୋଟିଏ ହେଉଛି ଆତ୍ମା ସମ୍ପର୍କରେ । ଅନ୍ୟଟି ହେଉଛି ଭଗବାନ ଅନନ୍ତ କି ନାହିଁ ସେ ସମ୍ପର୍କରେ । ପ୍ରଥମ ଉପାଖ୍ୟାନଟି ଆରମ୍ଭ କରି ସେ କହିଥିଲେ, "ଥରେ ଜଣେ ଲୋକର ଦେହରେ ଏକ ବିଷାକ୍ତ ତୀର ଆସି ବାଜିଲା । ସଙ୍ଗେ ସଙ୍ଗେ ତା'ର ବନ୍ଧୁମାନେ ତାକୁ ଏକ ଅଭିଜ୍ଞ ବୈଦ୍ୟ ପାଖକୁ ନେଇଗଲେ । ଯଦି ସେ ଲୋକଟି ସେଠାରେ କହିଥାନ୍ତା ଯେ, ଏ ଶରଟି କିଏ ମାରିଛି ତା'ର ନାମ ନ ଜାଣିଲେ ଏବଂ କେଉଁଠାରେ ଏ ତୀରଟି ତିଆରି ତାହା ନ ଜାଣିଲେ

ତା' ଦେହରୁ ସେ ଶର ବାହାର କରିବାକୁ ଦେବ ନାହିଁ, ତା' ହେଲେ ସେହିଠାରେ ତା'ର ମୃତ୍ୟୁ ହୋଇଥାନ୍ତା। ସେହିପରି ଭିକ୍ଷୁଗଣ, ଏ ଜୀବନର ସମସ୍ୟା ଏପରି ଗୁରୁତ୍ୱପୂର୍ଣ୍ଣ ଯେ, ତା'ର ସମାଧାନ ପାଇଁ ବିଚାର ନ କରି ଆତ୍ମା ସମ୍ପର୍କରେ ବିଚାର କରିବା ନିରର୍ଥକ।"

ଏକେତେବେଳ ପରି ବୁଦ୍ଧଙ୍କର ଯୁଗରେ ତରୁଣୀମାନଙ୍କ ମଧ୍ୟରେ ସୌନ୍ଦର୍ଯ୍ୟ ପ୍ରତିଯୋଗିତା ହେଉଥିଲା। ସବୁଠାରୁ ଯେ ସୁନ୍ଦରୀ ବିବେଚିତା ହେଉଥିଲା, ତାକୁ 'ଜନପଦ କଲ୍ୟାଣୀ' କୁହାଯାଉଥିଲା। ଈଶ୍ୱର ଅଛନ୍ତି କି ନାହାନ୍ତି, ସେ ସମ୍ପର୍କରେ ବୁଦ୍ଧ ଏହି ଉଦାହରଣ ଦେଇ କହିଲେ, "ଭିକ୍ଷୁଗଣ; ଯଦି କେହି କହେ ଯେ ମୁଁ ଅମୁକ ଜନପଦ କଲ୍ୟାଣୀକୁ ପାଇବାକୁ ଇଚ୍ଛାକରେ, ମାତ୍ର ଏ ଜନପଦ କଲ୍ୟାଣୀ ଦେଖିବାକୁ କିପରି, କାଳୀ ନା ଗୋରୀ, ଡେଙ୍ଗୀ ନା ଗେଡ଼ୀ ବୋଲି ପଚାରିଲେ ସେ କହେ—ମୁଁ ସେ କଥା ଜାଣେ ନାହିଁ, କିନ୍ତୁ ମୁଁ ତାକୁ ପାଇବାକୁ ଖୁବ୍ ଇଚ୍ଛା କରେ। ସେହିପରି ଭିକ୍ଷୁମାନେ, ଯେଉଁମାନେ ବ୍ରହ୍ମ ବା ଈଶ୍ୱରଙ୍କ ପଛରେ ଦୌଡ଼ୁଛନ୍ତି ସେମାନଙ୍କୁ ଯଦି ପଚରାଯାଏ, ଏ ବ୍ରହ୍ମ କ'ଣ ଓ କିପରି, ତା' ହେଲେ ଉତ୍ତର ମିଳେ—ଏହାକୁ ବାକ୍ୟରେ ବର୍ଣ୍ଣନା କରାଯାଇ ପାରିବ ନାହିଁ। କିନ୍ତୁ ଏହାଙ୍କ ସହିତ ମିଳନ ହିଁ କାମ୍ୟ।"

× × ×

ବୁଦ୍ଧ ନିଜର ଜ୍ଞାନ ସମ୍ପର୍କରେ ଗର୍ବ କରୁ ନଥିଲେ। ସେ ଯାହା କହୁଛନ୍ତି, ତା' ଠାରୁ ବଳି ଆଉ କିଛି ଜ୍ଞାନ ନାହିଁ, ଏ କଥା ବିଶ୍ୱାସ ନ କରିବା ପାଇଁ ସେ ତାଙ୍କର ଶିଷ୍ୟମାନଙ୍କୁ ଉପଦେଶ ଦେଉଥିଲେ। ନିକଟରେ ଥିବା ଗୋଟିଏ ଗଛରୁ ଦୁଇଟି ପତ୍ର ତୋଳି ଅରେ ସେ ତାଙ୍କର ଭିକ୍ଷୁମାନଙ୍କୁ ଡାକି ପଚାରିଲେ, ସେ କେତୋଟି ପତ୍ର ଧରିଛନ୍ତି ? ଭିକ୍ଷୁମାନେ ଉତ୍ତର ଦେବାରୁ ପୁଣି ପଚାରିଲେ, "ଏହାଠାରୁ ଆହୁରି ବେଶି ପତ୍ର ଅଛି ନା ଏତିକି ?"

"ଏହାଠାରୁ ଆହୁରି ବେଶି ପତ୍ର ଏ ଗଛରେ ଅଛି।"

"ଏ ଗଛରେ ଯେତିକି ପତ୍ର, ତାହାଠାରୁ କ'ଣ ଆହୁରି ବେଶି ପତ୍ର ନାହିଁ ?"

"ଅଚ୍ଛା, ତଥାଗତ, ତା'ର କଳନା କରାଯାଇ ପାରିବ ନାହିଁ ।"

ବୁଦ୍ଧ କହିଲେ, "ଭିକ୍ଷୁଗଣ, ସେହିପରି ମୁଁ ଯାହା ପ୍ରଚାର କରୁଛି, ତାହା ସୀମାବଦ୍ଧ । ଜ୍ଞାନ ଅସୀମ ।"

କେହି ଜଣେ ବୁଦ୍ଧଙ୍କୁ ପଚାରିଲେ, "ଆପଣଙ୍କର ଶିଷ୍ୟମାନେ ଆପଣଙ୍କ କଥା ମାନି ଚଳନ୍ତି ?" ଉତ୍ତର ମିଳିଲା, "କେହି କେହି ଚଳନ୍ତି । କେହି କେହି ଚଳନ୍ତି ନାହିଁ ।" ପୁଣି ପ୍ରଶ୍ନ ହେଲା, "ତା'ହେଲେ ଆପଣଙ୍କର ଶିଷ୍ୟ ମଧ୍ୟ ଆପଣଙ୍କ କଥା ମାନି ଚଳନ୍ତି ନାହିଁ ?" ବୁଦ୍ଧ ଉତ୍ତର ଦେଲେ, "ମୋର କାମ ହେଉଛି ରାସ୍ତା ଦେଖାଇବା । ଏ ରାସ୍ତାରେ ଚାଲିବା ନ ଚାଲିବା ସେମାନଙ୍କର କାମ ।"

ଖାଲି ନିଜର ଖାତିର ବଢ଼ାଇବା ପାଇଁ ଯେଉଁମାନେ ମହାପୁରୁଷମାନଙ୍କର ଶିଷ୍ୟ ହୋଇଯାନ୍ତି, ସେମାନଙ୍କୁ ନିନ୍ଦା କରି ଥରେ ବୁଦ୍ଧ କହିଲେ, "ଭିକ୍ଷୁଗଣ, ଯଦି ମୋର ଅଙ୍ଗ ବସ୍ତ୍ର କେହି ଧରି ମୋର ପଛେ ପଛେ ଚାଲୁଥାଏ ଏବଂ ଯଦି ସେ ଲୋଭୀ, କ୍ଷୁଦ୍ରମନା, ଭ୍ରଷ୍ଟାଚାରୀ ଓ ମିଥ୍ୟାବାଦୀ ହୋଇଥାଏ, ତା' ହେଲେ ମୋର ଯେତେ ନିକଟରେ ଥାଉନା କାହିଁକି, ମୁଁ ତା'ର ବହୁତ ଦୂରରେ ।"

× × ×

ବୁଦ୍ଧଙ୍କ ସମୟରେ ଭାରତ ବହୁତ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ଥିଲା ଏବଂ ଏହି ରାଜ୍ୟମାନଙ୍କ ମଧ୍ୟରେ ସାମାନ୍ୟ କଥାରେ ଅନେକ ସମୟରେ ଯୁଦ୍ଧ ଲାଗି ଯାଉଥିଲା । ବୁଦ୍ଧ ଥିଲେ ଶାନ୍ତିର ଅଗ୍ରଦୂତ ଏବଂ ଯେଉଁଠାରେ ଏପରି ଯୁଦ୍ଧର ସମ୍ଭାବନା ଦେଖୁଥିଲେ, ସେଠାରେ ସେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରୁଥିଲେ ।

ଥରେ ବୁଦ୍ଧ କପିଳବାସ୍ତୁରେ ଥିବା ସମୟରେ ଶାକ୍ୟ ଏବଂ କୋଲିୟମାନଙ୍କ ମଧ୍ୟରେ ରୋହିଣୀ ନଦୀରେ ବନ୍ଧ ପକାଇ ପାଣି ନେବା ବିଷୟରେ ଏକ ବିବାଦ ଲାଗିଗଲା । ଅବସ୍ଥା ଏତେଦୂର ଗଲା ଯେ, ଉଭୟ ପକ୍ଷ ଯୁଦ୍ଧ ପାଇଁ ତିଆରି ହୋଇଗଲେ ।

ଏ ଖବର ପାଇ ବୁଦ୍ଧ ଉଭୟ ସୈନ୍ୟଙ୍କ ମଝିରେ ଯାଇ ଆସନ ପାରି ବସିଗଲେ । ଏହା ଦେଖି ଉଭୟ ପକ୍ଷର ରାଜା, ଅମାତ୍ୟ ଓ ସୈନ୍ୟ ସାମନ୍ତମାନେ ଅସ୍ତ୍ର ତ୍ୟାଗ କରି ତାଙ୍କୁ ଆସି ଅଭିବାଦନ କଲେ ।

ବୁଦ୍ଧ ପଚାରିଲେ, "କେଉଁ କାରଣରୁ ଏ ବିବାଦ, ମହାରାଜ ?"

ରାଜା କହିଲେ, "ମୁଁ ଜାଣେନାହିଁ, ଭଗବାନ !"

ବୁଦ୍ଧ ପଚାରିଲେ, "ଏକ ଜାଣନ୍ତି ?"

ରାଜା କହିଲେ, "ମନ୍ତ୍ରୀ ଜାଣନ୍ତି ।"

ମନ୍ତ୍ରୀଙ୍କୁ ପଚାରିବାରୁ ସେ କହିଲେ—ସେ ଜାଣନ୍ତି ନାହିଁ, ସେନାପତି ଜାଣନ୍ତି । ସେନାପତି କହିଲେ, ଉପସେନାପତି ଜାଣନ୍ତି । ଏହିପରି ଖବର ଅନ୍ତର ନେଇଯିବାରୁ ଦେଖାଗଲା, ଶେଷକୁ ଦୁଇ ପକ୍ଷରୁ ଦୁ' ଜଣ ଚାଷୀଙ୍କ ଲେକ ବାହାରିଲେ । ସେମାନେ କହିଲେ, କ୍ଷେତରେ ପାଣି ମଡ଼ାଇବା ପାଇଁ କଏ ଆଗ ବନ୍ଧ ପକାଇବ, ସେଥିରୁ ବିବାଦ ଜାତ ହେଲା ।

ବୁଦ୍ଧ ପଚାରିଲେ, "ମହାରାଜ, ପାଣି ଟିକକର ମୂଲ୍ୟ କେତେ ?"

"କିଛି ନୁହେଁ, ଭଗବାନ !"

"ଜୀବନର ମୂଲ୍ୟ କେତେ ?"

"ତା'ର କଳନା କରି ହେବ ନାହିଁ; ତାହା ଅମୂଲ୍ୟ ।"

"ମୂଲ୍ୟହୀନ ପାଣି ଟିକକ ପାଇଁ ତୁମେ ଏତେ ଅମୂଲ୍ୟ ଜୀବନର ବିନାଶ କରିବା ପାଇଁ ବାହାରିଛ !"

ବୁଦ୍ଧଙ୍କ କଥାରେ ଉଭୟ ପକ୍ଷ ଚୁପ ହୋଇଗଲେ । ଶାକ୍ୟ ଓ କୋଲିୟମାନଙ୍କ ମଧ୍ୟରେ ପୁଣି ପୂର୍ବ ମିତ୍ରତା ଫେରି ଆସିଲା ।

ବର୍ତ୍ତମାନ କାଳରେ କେତେ ସାମାନ୍ୟ କାରଣରୁ ମୁଣ୍ଡ ଫଟାଫଟି ନ ହେଉଛି ? କଳରେ ପାଣି ପାଇଁ ହୁଡ଼ହଣା ଫଳରେ କେତେ ଫଉଜଦାରୀ ନ ହେଉଛି ? ଗାଁ ଗହଳରେ ସାମାନ୍ୟ କାରଣରୁ ଯେପରି ବିବାଦ ହେଉଛି, ଜାତି ଜାତି ଓ ଦେଶ ଦେଶ ମଧ୍ୟରେ ସେହିପରି ବିବାଦ ଓ

ମୂଳ ଲାଗି ଯାଉଛୁ । ତେଣୁ ଅଢ଼େଇ ହଜାର ବର୍ଷ ତଳେ ବୁଦ୍ଧ ଯେଉଁ ଉପଦେଶ ଦେଇଥିଲେ, ଶତ୍ରୁକୁ ମିତ୍ରତା ଦ୍ୱାରା ଜୟ କରିବାକୁ ହୁଏ, ଏବେ ମଧ୍ୟ ତା'ର ଆବଶ୍ୟକତା ବେଶି ।

× × ×

ବୁଦ୍ଧ ଥିଲେ ଗଣତନ୍ତ୍ର ବା ଗଣଶାସନର ସମର୍ଥକ । ସେତେବେଳେ ଭାରତବର୍ଷରେ ଯେଉଁ କେତୋଟି ଗଣରାଜ୍ୟ ଥିଲା, ତା' ମଧ୍ୟରେ ବୈଶାଳୀ ଥିଲା ପ୍ରଧାନ । ବୈଶାଳୀର ଲିଚ୍ଛବିମାନେ ଏପରି ଶକ୍ତିଶାଳୀ ଥିଲେ ଯେ, ତାଙ୍କୁ ମଗଧରାଜ ବିମ୍ବିସାର ଏବଂ ଅଜାତଶତ୍ରୁ ଭୟ କରୁଥିଲେ । ଏହି ସବୁ ରାଜ୍ୟରେ ବ୍ୟବସ୍ଥା ସଭା ଥିଲା ଏବଂ ଭୋଟ ଦ୍ୱାରା ସବୁ ସ୍ଥିର କରାଯାଉଥିଲା । ବୁଦ୍ଧ ନିଜର ଭିକ୍ଷୁ ସଂଘ ପାଇଁ ଯେଉଁ ଗଣତାନ୍ତ୍ରିକ ନିୟମାବଳୀ ରଚନା କରିଥିଲେ, ଲିଚ୍ଛବି ସମ୍ବିଧାନ ସହିତ ତା'ର ବହୁତ ମେଳ ଦେଖାଯାଏ ।

ଥରେ ବୁଦ୍ଧ ତାଙ୍କର ପ୍ରିୟ ଶିଷ୍ୟ ଆନନ୍ଦଙ୍କୁ ଲିଚ୍ଛବିମାନଙ୍କର ପ୍ରଶଂସା କରି କହିଥିଲେ, "ଆନନ୍ଦ, ଯେତେଦିନ ପର୍ଯ୍ୟନ୍ତ ଲିଚ୍ଛବିମାନେ ତାଙ୍କର ଗଣସଭାରେ ବାରମ୍ବାର ବସି ସମସ୍ତ ବିଷୟର ଆଲୋଚନା କରୁଥିବେ, ସେମାନଙ୍କ ମଧ୍ୟରେ ମିତ୍ରତାର ବାତାବରଣ ରହିଥିବ, ଜ୍ୟେଷ୍ଠମାନଙ୍କର ଉପଦେଶ ସେମାନେ ମାନୁଥିବେ, ସେତେଦିନ ପର୍ଯ୍ୟନ୍ତ ସେମାନଙ୍କର ଅଧୋଗତି ନାହିଁ, ଅଗ୍ରଗତି ।"

× × ×

ଏହିପରି ଭାବରେ ବୁଦ୍ଧ ତାଙ୍କର ଜୀବନ କାଳରେ ଧର୍ମ, ସମାଜ ଓ ରାଜନୀତିର ବିଭିନ୍ନ ସମସ୍ୟା ସମ୍ପର୍କରେ ନିଜର ସ୍ୱତନ୍ତ୍ର ମତବାଦର ପ୍ରଚାର କରିଥିଲେ । ଅନ୍ଧ ଗତାନୁଗତିକତା ଓ କୁସଂସ୍କାର ମଧ୍ୟରେ ସେ ଥିଲେ ପ୍ରଗତି ଓ ନୂତନତ୍ୱର ପ୍ରବର୍ତ୍ତକ । ତାଙ୍କର ପ୍ରଚାରରେ ଏପରି ମାଦକତା ଥିଲା ଯେ, ଆଜି ଦୁଇହଜାର ପାଞ୍ଚଶହ ବର୍ଷ ପରେ କାଳର ବ୍ୟବଧାନ ଭେଦ କରି ଆମେ ତାଙ୍କର ବାଣୀ ଶୁଣି ପାରୁଛୁ ।



# ମୂଠାଏ ସୋରିଷ, ଗୋଟିଏ କପୋତ ଓ ଅଙ୍ଗୁଳିମାଳ

ବୁଦ୍ଧଙ୍କର ସରଳ ପ୍ରବଚନ ଲୋକଙ୍କର ହୃଦୟ ସ୍ପର୍ଶ କରୁଥିଲା । ଯେ ଯେପରି ସ୍ତରରେ ବୁଝି ପାରନ୍ତି, ସେ ସେପରି ସ୍ତରରେ ତାକୁ ବୁଝାଉଥିଲେ । ତାଙ୍କର ପ୍ରବଚନ କୌଶଳ ସମ୍ପର୍କରେ ଗୋଟିଏ ସୁନ୍ଦର କାହାଣୀ ଅଛି । ସେ ଥରେ ଅନାଥ ପିଣ୍ଡିକଙ୍କର ଜେତବନରେ ବିହାର କରୁଥିବାବେଳେ ଗୋଟିଏ ତରୁଣୀ ତା'ର ମୃତ ଶିଶୁକୁ ଧରି ତାଙ୍କ ପାଖରେ ଆସି ପହଞ୍ଚିଲା । ସେ କାନ୍ଦି କାନ୍ଦି ବୁଦ୍ଧଙ୍କୁ କହିଲା, "ମୁଁ ଜଣେ ଧନୀ ଘରର କୁଳବଧୂ । ଏହି ଏକମାତ୍ର ସନ୍ତାନଟିର ମୁହଁ ଚାହିଁ ମୋର ଦିନ କଟି ଯାଉଥିଲା । ମୁଁ କି ଦୋଷ କରିଥିଲି ଯେ, ବିଧାତା ମୋ ପାଖରୁ ଏହାକୁ ଛଡ଼ାଇ ନେଲା ? ହେ ତଥାଗତ, ଆପଣଙ୍କ ନାମ ଚାରିଆଡ଼େ ପଡ଼ିଛି । ଆପଣ ହିଁ କେବଳ ମୋର ମୃତ ଶିଶୁଟିକୁ ବଞ୍ଚାଇ ପାରିବେ ବୋଲି ଶୁଣି ଆପଣଙ୍କ ପାଖକୁ ଆସିଛି । ମୋ ପ୍ରତି ସଦୟ ହୁଅନ୍ତୁ ।" ଏ ତରୁଣୀର ନାମ ଥିଲା କୃଶା ଗୌତମୀ ।

ବୁଦ୍ଧ କୃଶା ଗୌତମୀଙ୍କୁ ଆଶ୍ୱାସନା ଦେଇ କହିଲେ, "ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଏ ଶିଶୁଟିକୁ ବଞ୍ଚାଇ ଦେବି । ମାତ୍ର ତା' ପୂର୍ବରୁ ଯେଉଁ ଘରୁ କେହି ମରି ନ ଥିବେ, ସେ ଘରୁ ମୂଠାଏ ସୋରିଷ ଆଣି ମତେ ଦେବା ଦରକାର ।"

କୃଶା ଗୌତମୀ ନିଜର ମୃତ ଶିଶୁକୁ ଧରି ଘରେ ଘରେ ବୁଲିଲା । ମୁଠାଏ ସୋରିଷ ପାଇଁ କେତେ ନେହୁରା ହେଲା । ମାତ୍ର ଶ୍ରାବସ୍ତି ନଗରରେ ଏପରି କୌଣସି ଘର ନ ଥିଲା, ଯେଉଁ ଘରୁ କି କେହି ଜଣେ ହେଲେ ମରି ନାହିଁ । ଅଶ୍ରୁ ଛଳ ଛଳ ମୁହଁରେ ସମସ୍ତେ ଉତ୍ତର ଦେଲେ, କେହି ନା କେହି ତାଙ୍କର ପ୍ରିୟଜନ ମୃତ୍ୟୁ ମୁଖରେ ପଡ଼ିଛି । କୃଶା ଗୌତମୀ ଯେଉଁଥିପାଇଁ ବୁଦ୍ଧଙ୍କ ପାଖକୁ ଯାଇଥିଲା, ତା'ର ଉତ୍ତର ମିଳିଗଲା – ମୃତ୍ୟୁକୁ ନିବାରଣ କରିହେବ ନାହିଁ । ଧନ, ପୁତ୍ରର ଲୋଭ ଯେତେ ବେଶି, ମରଣର ଦୁଃଖ ସେତିକି କଷ୍ଟକର ।

ବୁଦ୍ଧ ବୈଶାଳୀର ଆମ୍ରବନରେ ଭ୍ରମଣ କରୁଥିବାବେଳେ ବୁଦ୍ଧଙ୍କର ଆଗମନର ସମ୍ବାଦ ଶୁଣି ସବୁ ଶ୍ରେଣୀର ଲୋକ ତାଙ୍କର ସାକ୍ଷାତ ପାଇଁ ଯାଉଥିଲେ । ସେତେବେଳେ ଆମ୍ରପାଳି ନାମରେ ବୈଶାଳୀରେ ଏକ ପ୍ରସିଦ୍ଧ ବେଶ୍ୟା ଥିଲା । ଏହାର ନାମ ଆମ୍ରପାଳି ହେବାର କାରଣ, ଜନ୍ମ ହେବା ପରେ ନଗର ଉପକଣ୍ଠର ଏକ ଆମ୍ରଗଛ ମୂଳରେ ତାକୁ କେହି ପକାଇଦେଇ ଆସିଥିଲା । ଆମ୍ରବନର ରକ୍ଷକ ତାକୁ ପାଇ ପାଳନ କରିଥିଲା ଏବଂ ଏହି ଆମ୍ରବନ ମଧ୍ୟରେ ସେ ତା'ର ବାଲ୍ୟକାଳ କଟାଇଥିଲା । ଆମ୍ରପାଳି ଏପରି ରୂପବତୀ ଥିଲା ଯେ, ବୈଶାଳୀର ଓ ମଗଧ ରାଜ୍ୟର ବହୁ ସମ୍ଭ୍ରାନ୍ତ ଯୁବକ ତା' ପ୍ରତି ଆକୃଷ୍ଟ ଥିଲେ । ଏପରି କି ରାଜା ବିମ୍ବିସାର ମଧ୍ୟ ତାକୁ ବିବାହ କରିବା ପାଇଁ ପ୍ରସ୍ତାବ ଦେଇଥିଲେ ବୋଲି କଥିତ ଅଛି । ବୈଶାଳୀ ଏକ ଗଣରାଜ୍ୟ ଥିଲା ଏବଂ ମଗଧ ଥିଲା ବୈଶାଳୀର ଶତ୍ରୁ ରାଜ୍ୟ । ତେଣୁ ଆମ୍ରପାଳିକୁ କିଏ ବିବାହ କରିବ, ସେହି ପ୍ରଶ୍ନ ଉପରେ ଏକ ଯୁଦ୍ଧ ହୋଇପାରେ ବୋଲି ଆଶଙ୍କା କରାଗଲା ।

ଏ ପ୍ରଶ୍ନର ବିଚାର କରିବା ପାଇଁ ବୈଶାଳୀର ଗଣ ପରିଷଦର ବୈଠକ ବସିଲା । ବହୁ ବିଚାର ପରେ କୁଳବୃଦ୍ଧମାନେ ସ୍ଥିର କଲେ, 'ଆମ୍ରପାଳି ଯଦି କନ୍ୟା ହୋଇ ରହେ, ତା' ହେଲେ ବୈଶାଳୀ ପକ୍ଷରେ ଘୋର ବିବାଦର କାରଣ ହେବ । ତେଣୁ ଏ ଜଣକର ସ୍ତ୍ରୀ ନ ହୋଇ ଗଣଭୋଗ୍ୟା ହେଉ । ଏହାକୁ ଗଣିକା କରି ଦିଆଯାଉ ।' ଆମ୍ରପାଳି ଗଣିକା ହୋଇଗଲା ।

ବୁଦ୍ଧ ବୈଶାଳୀରେ ତା'ର ଆମ୍ରବନରେ ଭ୍ରମଣ କରୁଥିବାର ସମ୍ବାଦ ପାଇ ଅମ୍ବପାଲି ଦାସୀମାନଙ୍କ ଗହଣରେ ବୁଦ୍ଧଙ୍କର ଦର୍ଶନ ପାଇଁ ଯାଇଥିଲା । ବୁଦ୍ଧଙ୍କର ଦର୍ଶନ ହୋଇ ପାରିବ ନାହିଁ ବୋଲି କେତେକ ଭିକ୍ଷୁ ମନାକରି ଦେଉଥିଲେ । ମାତ୍ର ପରେ ଆନନ୍ଦ ଅମ୍ବପାଲିକୁ ନେଇ ବୁଦ୍ଧଙ୍କ ପାଖରେ ପହଞ୍ଚାଇ ଦେଲେ । ପ୍ରଣିପାତ କରି ଭିକ୍ଷୁ ସଂଘ ସହିତ ତା'ର ଗୃହରେ ଭୋଜନ କରିବା ପାଇଁ ସେ ବୁଦ୍ଧଙ୍କୁ ନିମନ୍ତ୍ରଣ କଲା । ବୁଦ୍ଧ ନୀରବରେ ନିମନ୍ତ୍ରଣ ସ୍ୱୀକାର କଲେ । ଆମ୍ବପାଲିର ଘରେ ବୁଦ୍ଧ ଭୋଜନ କରିବାପାଇଁ ସମ୍ମତ



ହୋଇଛନ୍ତି ବୋଲି ଶୁଣି ବୈଶାଳୀର ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତିମାନେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ବୁଦ୍ଧଙ୍କ ପାଖକୁ ଯାଇ ଏ ନିମନ୍ତ୍ରଣ ରକ୍ଷା ନ କରିବା-ପାଇଁ ଅନୁରୋଧ କଲେ । ମାତ୍ର ବୁଦ୍ଧ କହିଲେ, "ସେ ସମସ୍ତଙ୍କର ନିମନ୍ତ୍ରଣ

ରକ୍ଷା କରନ୍ତୁ । ତାଙ୍କ ଦୃଷ୍ଟିରେ ଉଚ୍ଚ, ନୀଚ, ଅସ୍ପୃଶ୍ୟ, ଅଭିଜାତର ଭେଦଭାବ ନାହିଁ ।" ସେ ଭିକ୍ଷୁ ସଂଘ ସହ ପରଦିନ ଅମ୍ବପାଲିର ନିମନ୍ତ୍ରଣ ରକ୍ଷା କରିଥିଲେ ଏବଂ ତାକୁ ଧର୍ମ ଉପଦେଶ ଦେଇଥିଲେ । ଅମ୍ବପାଲି ବୁଦ୍ଧ ଓ ଭିକ୍ଷୁ ସଂଘକୁ ତା'ର ଆମ୍ରବନ ଦାନ କରିଥିଲା ଏବଂ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲା ।

ବୁଦ୍ଧ ଭିକ୍ଷୁମାନଙ୍କୁ ଅମ୍ବପାଲି ସମ୍ପର୍କରେ ଗୋଟିଏ କାହାଣୀ କହିଥିଲେ । 'ଅମ୍ବପାଲି ଅନେକ ଜନ୍ମରେ ଏକ କପୋତ ପକ୍ଷୀ ଥିଲା ଏବଂ ବନରେ ଖୁବ ସୁଖରେ ବିହାର କରୁଥିଲା । ହଠାତ୍ ଦିନେ ବନରେ ନିଆଁ ଲାଗି ସେ ନିଆଁ ସବୁଆଡ଼େ ବ୍ୟାପିଗଲା ଏବଂ ପଶୁ ପକ୍ଷୀମାନେ ଭୟରେ କୋଳାହଳ କରିବାକୁ ଲାଗିଲେ । କପୋତଟି କିଛି ମାତ୍ର ସମୟ ନଷ୍ଟ ନ କରି ନିକଟରେ ବହି ଯାଉଥିବା ଗୋଟିଏ ନଦୀର ପାଣିରେ ବୁଡ଼ି ପଡ଼ୁଥିଲା ଏବଂ ତା'ର ଡେଣା ଓ ପରରେ ଯେତିକି ପାଣି ଲାଗୁଥିଲା, ସେତକ ନିଆଁ ଉପରେ ଝାଡ଼ିଦେଇ ଯାଉଥିଲା । ଏହା ଦେଖି ଆକାଶରେ ଦେବତାମାନେ ହସିବାକୁ ଲାଗିଲେ ଏବଂ ଏଥିରେ ନିଆଁ କିପରି ଲିଭିବ ବୋଲି ତାକୁ ପଚାରିଲେ । କପୋତ କହିଲା— ଯେତେବେଳେ ସେମାନେ କିଛି ନ କରି ଚୁପ୍ ହୋଇ ମଜା ଦେଖୁଛନ୍ତି, ସେ ଯେତିକି କରିପାରୁଛି, କରୁଛି । ଏଥିରେ ଦେବତାମାନେ ଲଜ୍ଜା ଅନୁଭବ କଲେ ଏବଂ ସଙ୍ଗେ ସଙ୍ଗେ ବର୍ଷା କରି ବଣର ନିଆଁ ଲିଭେଇ ଦେଲେ ।' ଅମ୍ବପାଲିର ହୃଦୟ ଓ ମନ ନିର୍ମଳ ବୋଲି ବୁଦ୍ଧ ପ୍ରଶଂସା କରିଥିଲେ ।

ବୁଦ୍ଧ ଶ୍ରାବସ୍ତିରେ ରହୁଥିବାବେଳେ ଅଙ୍ଗୁଳିମାଳା ନାମରେ ଏକ ଦସ୍ୟୁ ଥିଲା । ଦସ୍ୟୁ ଭୟରେ ଗାଁସବୁ ଶୂନଶାନ ହୋଇ ଯାଉଥିଲା । ସେ ଏକ ନିକଟବର୍ତ୍ତୀ ଅରଣ୍ୟରେ ରହି ଯେଉଁମାନେ ସେ ବାଟରେ ଯାଉଥିଲେ ତାଙ୍କୁ ଆକ୍ରମଣ କରି ଧନ ଦୌଲତ ଲୁଟପାଟ କରି ନେଉଥିଲା । ଲୋକଙ୍କୁ ମାରି ତାଙ୍କର ଆଙ୍ଗୁଠି କାଟି ବେକରେ ମାଳାକରି ପିନ୍ଧୁଥିବା ଯୋଗୁଁ ଲୋକେ ତାକୁ ଅଙ୍ଗୁଳିମାଳା ନାମରେ ଡାକୁଥିଲେ । କେହି ଏ ଦସ୍ୟୁକୁ ଧରି ପାରୁ ନ ଥିଲେ ।

ବୁଦ୍ଧ ଥରେ ଶ୍ରାବସ୍ତି ନଗରରେ ଭିକ୍ଷା କରୁଥିବାବେଳେ ଅଙ୍ଗୁଳିମାଳାର କଥା ଲୋକଙ୍କଠାରୁ ଶୁଣିଲେ । ଅଙ୍ଗୁଳିମାଳା ନିକଟବର୍ତ୍ତୀ ଯେଉଁ ଅରଣ୍ୟରେ ରହୁଛ, ସେହି ଅରଣ୍ୟ ଅଭିମୁଖରେ ସେ ଏକାକୀ ବାହାରିଲେ । ଅଙ୍ଗୁଳିମାଳା ଦୂରରୁ ବୁଦ୍ଧଙ୍କୁ ଆସୁଥିବାର ଦେଖିପାରି ଧନୁ, ଶର, ଢାଲ, ଖଡ୍ଗରେ ସଜ୍ଜିତ ହୋଇ ତାଙ୍କୁ ପଛରୁ ଆସି ଆକ୍ରମଣ କରିବା ପାଇଁ ଲୁଚି ରହିଲା । ମାତ୍ର ଏହି-ପରି କଥିତ ଅଛି ଯେ, ବୁଦ୍ଧ ଯେତେ ପାଖକୁ ପାଖକୁ ଆସିଲେ, ଅଙ୍ଗୁଳି-ମାଳାର ମନ ସେତିକି ବଦଳିଲା । ହାତରୁ ଧନୁ, ଶର ଓ ଖଣ୍ଡା ଖସିପଡ଼ିଲା । ଏ ପ୍ରକାର ବୃତ୍ତି ଛାଡ଼ି ଅହିଂସା ଧର୍ମ ଗ୍ରହଣ କରିବା ପାଇଁ ବୁଦ୍ଧ ଅଙ୍ଗୁଳି-ମାଳାକୁ ଉପଦେଶ ଦେଲେ ଏବଂ ସେ ବୁଦ୍ଧଙ୍କର ଶିଷ୍ୟତ୍ୱ ଗ୍ରହଣ କଲା ।



# ସଂଘଂ ଶରଣଂ ଗଚ୍ଛାମି

ବୁଦ୍ଧ ସ୍ତ୍ରୀଲୋକମାନଙ୍କୁ ପ୍ରଥମେ ଶିଷ୍ୟାରୂପେ ଗ୍ରହଣ କରୁ ନଥିଲେ । ମାତ୍ର ପରେ ଆନନ୍ଦଙ୍କ ଅନୁରୋଧରେ ସେ ସ୍ତ୍ରୀଲୋକମାନଙ୍କୁ ଭିକ୍ଷୁ ସଂଘରେ ଗ୍ରହଣ କଲେ । ରାଜା ଶୁଦ୍ଧୋଦନ ମୃତ୍ୟୁଶଯ୍ୟାରେ ପଡ଼ିଥିବାର ସମ୍ବାଦ ପାଇ ବୁଦ୍ଧ କପିଳବାସ୍ତୁ ଯାତ୍ରା କରିଥିଲେ ଏବଂ ରାଜାଙ୍କୁ ଧର୍ମୋପଦେଶ ଦେଇଥିଲେ । ଶୁଦ୍ଧୋଦନଙ୍କ ମୃତ୍ୟୁ ପରେ ବୁଦ୍ଧଙ୍କର ମାଉସୀ ଓ ବିମାତା ରାଣୀ ମହାପ୍ରଜାପତି ଶାକ୍ୟ ବଂଶର ବହୁ ସ୍ତ୍ରୀଲୋକଙ୍କ ସହିତ ବୁଦ୍ଧଙ୍କ ନିକଟକୁ ଆସି ସେମାନଙ୍କୁ ତାଙ୍କର ଭିକ୍ଷୁସଂଘରେ ଗ୍ରହଣ କରିବା ପାଇଁ ଅନୁରୋଧ କରିଥିଲେ, ମାତ୍ର ବୁଦ୍ଧ ଗ୍ରହଣ କଲେ ନାହିଁ ।

ସେ ଥରେ ବୈଶାଳୀର ମହାବନରେ ଭ୍ରମଣ କରୁଛନ୍ତି, ରାଣୀ ମହାପ୍ରଜାପତି ଶାକ୍ୟ ସ୍ତ୍ରୀମାନଙ୍କ ସହିତ ସେଠାରେ ଆସି ପହଞ୍ଚିଲେ । ବୁଦ୍ଧଙ୍କର ଭିକ୍ଷୁମାନେ ଯେମିତି ମୁଣ୍ଡବାଳ କାଟି ଦେଇଥାନ୍ତି, ସେ ସେହିପରି ମୁଣ୍ଡର ବାଳ କାଟି ଏବଂ ଗୈରିକ ବସ୍ତ୍ର ପିନ୍ଧି ଦୃଢ଼ ମନରେ ଆସିଥିଲେ । ବହୁପଥ ଚାଲି ଚାଲି ତାଙ୍କର ପାଦ ଫୁଲି ଯାଇଥିଲା ଏବଂ ଦେହ ଧୂଳିଧୂସର ହୋଇ ଯାଇଥିଲା । ପୁଣି ଥରେ ବୁଦ୍ଧଙ୍କୁ ଅନୁରୋଧ କରିବା ପାଇଁ ସେ ଦ୍ୱାରରେ ଅପେକ୍ଷା କରି ରହିଥିଲେ । ଦୂରରୁ ମହାପ୍ରଜାପତିଙ୍କୁ ଏପରି ବେଶରେ ଦେଖି ଆନନ୍ଦଙ୍କର ହୃଦୟ ତରଳିଗଲା ଏବଂ ଏପରି କଷ୍ଟ ସହି ମନର ଦୃଢ଼ତା ଓ ହୃଦୟର ଶ୍ରଦ୍ଧା ଘେନି ଯେଉଁମାନେ ଆସିଛନ୍ତି, ତାଙ୍କୁ ଭିକ୍ଷୁ ସଂଘରେ ଗ୍ରହଣ କରିବାପାଇଁ ସେ ବୁଦ୍ଧଙ୍କୁ ଯାଇ ଅନୁରୋଧ କଲେ । ତଥାପି ବୁଦ୍ଧ ମନା କରି ଦେଲେ । ଶେଷକୁ

ଆନନ୍ଦଙ୍କୁ ଏକ ଉପାୟ ଦେଖାଗଲା । ସେ ବୁଦ୍ଧଙ୍କୁ ପଚାରିଲେ, "ଯଦି ସ୍ତ୍ରୀମାନେ ତଥାଗତଙ୍କ ପ୍ରଚାରିତ ଧର୍ମରେ ବିଶ୍ୱାସ କରି ଘର ଛାଡ଼ି ଧର୍ମର ନୀତି ଓ ଶୃଙ୍ଖଳା ମାନି ଚଳନ୍ତି, ତା'ହେଲେ ସେମାନେ କ'ଣ ମୁକ୍ତିର ଜ୍ଞାନ ଲାଭ କରି ପାରିବେ ନାହିଁ ? ସେମାନେ କ'ଣ ଅର୍ହତ ହୋଇ ପାରିବେ ନାହିଁ ?" ବୁଦ୍ଧ ଏହା ଅସ୍ୱୀକାର କରି ପାରିଲେ ନାହିଁ ଏବଂ ଭିକ୍ଷୁଣୀମାନଙ୍କର ଏକ ସଂଘ ରହିବା ପାଇଁ ସମ୍ମତ ହେଲେ । ସେହି ଦିନଠାରୁ ପୁରୁଷମାନଙ୍କ ପରି ସ୍ତ୍ରୀଲୋକମାନେ ବୁଦ୍ଧଙ୍କର ଧର୍ମ ଓ ସଂଘରେ ସମାନ ଅଧିକାର ପାଇଲେ ।

ବୁଦ୍ଧ ତାଙ୍କର ସଂଘ ମଧ୍ୟରେ ଶୃଙ୍ଖଳା ରକ୍ଷା କରିବା ପାଇଁ ବିଶେଷ ଜୋର ଦେଉଥିଲେ । ତାଙ୍କର ମୃତ୍ୟୁ ପରେ ଏହି ସଂଘହିଁ କେବଳ ଧର୍ମର ଦୀପ ଜଳେଇ ରଖିବ ବୋଲି ସେ ବିଶ୍ୱାସ କରୁଥିଲେ । ତେଣୁ ସେ କୌଣସି ଉତ୍ତରାଧିକାରୀ ବାଛି ନଥିଲେ । ବ୍ୟକ୍ତିକୁ ପ୍ରାଧାନ୍ୟ ନ ଦେବା ଥିଲା ତାଙ୍କର ଇଚ୍ଛା । ସଂଘ ମଧ୍ୟରେ କୌଣସି ବିବାଦ ବା କଳହ ହେଲେ ତାଙ୍କ ମନରେ ଭାରି ଆଘାତ ଲାଗୁଥିଲା । ଥରେ କୌଶାମ୍ବୀରେ ଥିବାବେଳେ ବୁଦ୍ଧଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଏକ ଘୋର ବିବାଦ ଦେଖାଗଲା । ବିବାଦ ଏପରି ହେଲା ଯେ, କଟୁଭାଷା ବ୍ୟବହାର କରିବା ସଙ୍ଗେ ସଙ୍ଗେ କେତେକଙ୍କ ମଧ୍ୟରେ ହାତାହାତି ମଧ୍ୟ ଚାଲିଲା ।

ନିଜେ ଠିକ ଓ ଅନ୍ୟମାନେ ଭୁଲ ବୋଲି ବିଚାର କରି ପରସ୍ପରକୁ ଘୃଣା କଲେ ତା'ର ପରିଣାମ କିପରି ବିପଜ୍ଜନକ, ସେ ସଂପର୍କରେ ବୁଦ୍ଧ ଏକ କାହାଣୀ କହିଥିଲେ :

ପୂର୍ବ କାଳରେ ଦୀର୍ଘେତି ନାମରେ କୋଶଳରେ ଜଣେ ରାଜା ଥିଲେ । କାଶୀରାଜ ବ୍ରହ୍ମଦତ୍ତ କୋଶଳ ଆକ୍ରମଣ କରି ଅଧିକାର କରିବାରୁ ରାଜା ଦୀର୍ଘେତି ନିଜ ରାଜ୍ୟ ଛାଡ଼ି ପଳାଇଲେ ଏବଂ ଛଦ୍ମ ବେଶରେ ବହୁକାଳ ବୁଲିବା ପରେ ଶେଷକୁ କାଶୀରେ ଯାଇ ଜଣେ କୁମ୍ଭାର ଘରେ ନିଜ ସ୍ତ୍ରୀଙ୍କ ସହିତ ରହିଲେ । ମାତ୍ର ତାଙ୍କର ନିଜର ଜଣେ ଅନୁଚର ଧନ ଲୋଭରେ

ତାଙ୍କ ପୁତ୍ର ବିଶ୍ୱାସଘାତକତା କଲା ଏବଂ ସେ ଯେଉଁଠାରେ ଲୁଚିଛନ୍ତି, ତା'ର ଖବର ନେଇ କାଶୀ ରାଜାଙ୍କୁ ଦେଲା । କାଶୀରାଜା ଅଣୁମାତ୍ର ବିଳମ୍ବ ନକରି ରାଜା ଦୀର୍ଘେତିଙ୍କୁ ବାନ୍ଧି ନେଇଗଲେ ଏବଂ ସସ୍ତ୍ରୀକ ତାଙ୍କୁ ଫାଶୀରେ ଲଟକାଇ ଦେଲେ । ରାଜା ଦୀର୍ଘେତିଙ୍କର ଏକମାତ୍ର ପୁତ୍ର ଦୀର୍ଘାୟୁ ସେତେବେଳେ କାଶୀରେ ତାଙ୍କ ପିତାଙ୍କ ପରି ଛଦ୍ମବେଶରେ ରହୁଥିଲେ । ଫାଶୀକାଠରେ ଝୁଲିବା ପୂର୍ବରୁ ଦୀର୍ଘେତି ତାଙ୍କର ପୁତ୍ରଙ୍କୁ କହିଗଲେ, "ଦୀର୍ଘାୟୁ, ଘୃଣା ଦ୍ୱାରା କେବେ ଘୃଣାର ପ୍ରତିଶୋଧ ନିଆଯାଏ ନାହିଁ, ଉଦାରତା ଦ୍ୱାରା କେବଳ ଘୃଣାର ପ୍ରତିଶୋଧ ନିଆଯାଇ ପାରେ ।"

ଦୀର୍ଘାୟୁ କିଛିଦିନ ଛଦ୍ମବେଶରେ ବୁଲିବା ପରେ ଶେଷରେ ନିଜର ପରିଚୟ ନ ଦେଇ କାଶୀ ରାଜଦରବାରରେ ଚାକିରି କଲେ । ପ୍ରଥମେ ସେ ରାଜାଙ୍କର ହାତୀଶାଳାର ରକ୍ଷକ ହୋଇଥିଲେ, ମାତ୍ର ପରେ ତାଙ୍କର ଗୁଣରେ ସନ୍ତୁଷ୍ଟ ହୋଇ ରାଜା ତାଙ୍କୁ ନିଜର ଦେହରକ୍ଷୀ ଭାବରେ ନିଯୁକ୍ତ କଲେ । ଥରେ ରାଜା ମୃଗୟା କରିବା ପାଇଁ ଯାଉଥିବାବେଳେ ତାଙ୍କ ସଙ୍ଗରେ ଦେହରକ୍ଷୀ ଭାବରେ କେବଳ ଦୀର୍ଘାୟୁ ଯାଇଥିଲେ । ରାଜା ମୃଗୟାରୁ କ୍ଳାନ୍ତ ହୋଇ ଗୋଟିଏ ଗଛମୂଳେ ଶୋଇ ପଡ଼ିଛନ୍ତି, ଦୀର୍ଘାୟୁଙ୍କର ପୂର୍ବସ୍ମୃତି ମନେ ପଡ଼ିଲା । ସେ ତାଙ୍କର ପିତୃହନ୍ତାର ପ୍ରତିଶୋଧ ନେବେ ବୋଲି ବିଚାର କରି ଖୋଳରୁ ଖଣ୍ଡା ବାହାର କଲେ । ମାତ୍ର ପର ମୁହୂର୍ତ୍ତରେ ତାଙ୍କର ପିତାଙ୍କର କଥା ମନେପଡ଼ିଲା । ସେ ଖଣ୍ଡାକୁ ପୁଣି ଖୋଳ ଭିତରେ ରଖିଦେଲେ । ରାଜାଙ୍କର ଏହି ସମୟରେ ନିଦ ଭାଙ୍ଗିଲା ଏବଂ ସେ ଏକ ଅଜଣା ଭୟରେ ଥରିବାକୁ ଲାଗିଲେ । ସେ କାହିଁକି ଏପରି ଥରୁଛନ୍ତି ବୋଲି ଦୀର୍ଘାୟୁ ପଚାରିବାରୁ ରାଜା କହିଲେ—କୋଶଳର ରାଜା ଦୀର୍ଘେତିଙ୍କୁ ହତ୍ୟା କରିଥିବାରୁ ତାଙ୍କ ମନ ସବୁବେଳେ ଅସ୍ଥିର ଅଛି । ସେ ଭାବୁଛନ୍ତି ଯେ, ଦୀର୍ଘେତିଙ୍କ ପୁତ୍ର ଦିନେ ନା ଦିନେ ତାଙ୍କୁ ହତ୍ୟାକରିବ । ଦେହରକ୍ଷୀ ସଙ୍ଗେ ସଙ୍ଗେ ନିଜର ପରିଚୟ ଦେଇ କହିଲେ—ସେ ହେଉଛନ୍ତି ନିଜେ ଦୀର୍ଘେତିଙ୍କର ପୁତ୍ର ଦୀର୍ଘାୟୁ । ଏହା ଶୁଣି ରାଜାଙ୍କର ଦେହରେ ଆଉ ଜୀବନ ରହିଲା ନାହିଁ । ସେ ମୃତ୍ୟୁର ହାତରେ ପଡ଼ିଛନ୍ତି ବୋଲି ମନେ କରି ଅଧିକ ଭୟରେ ଥରିବାକୁ ଲାଗିଲେ ।

ମାତ୍ର ପାର୍ଶ୍ୱାସ୍ନୁ କହିଲେ, "କାଶୀରାଜ, ଭୟର କାରଣ ନାହିଁ । ମୁଁ ତୁମକୁ ହତ୍ୟା କରିବି ନାହିଁ । ତୁମକୁ ଛାଡ଼ିଦେବା ପାଇଁ ମରିବା ପୂର୍ବରୁ ମୋର ପିତା ମୋତେ ଅନୁରୋଧ କରି ଯାଇଛନ୍ତି ।" କାଶୀ ରାଜା ପ୍ରତି ପାର୍ଶ୍ୱର ଓ ତାଙ୍କ ପୁତ୍ର ପାର୍ଶ୍ୱାସ୍ନୁଙ୍କର ଏ ମହାନୁଭବତା ଦେଖି ନିଜକୁ ଲଜ୍ଜିତ ବୋଧକଲେ ଏବଂ କୋଶଳର ସିଂହାସନ ପାର୍ଶ୍ୱାସ୍ନୁଙ୍କୁ ଫେରାଇ ଦେଲେ ।

ଭିକ୍ଷୁ ସଂଘ ମଧ୍ୟରେ ଶାନ୍ତି ଓ ଏକତା ରକ୍ଷା ପାଇଁ ବୁଦ୍ଧ ଏହିପରି ବହୁତ କାହାଣୀ କହୁଥିଲେ । ଶତ୍ରୁର ପ୍ରତି ଉଦାରତା ଓ ଆତ୍ମତ୍ୟାଗରେ ସବୁ ପୂର୍ଣ୍ଣ ଥିଲା । ବେଳେ ବେଳେ ବିବାଦରତ ଭିକ୍ଷୁ ସଂଘକୁ ବାଟକୁ ଆଣିବାପାଇଁ ସେ ସଂଘଠାରୁ ଦୂରକୁ ଚାଲି ଯାଉଥିଲେ ଏବଂ ତାଙ୍କର ଅଭାବ ଅନୁଭବ କରି ଭିକ୍ଷୁମାନେ ନିଜ ନିଜ ମଧ୍ୟରେ ଥିବା କଳହ ଓ ବିବାଦ ଦୂରକରି ତାଙ୍କୁ ନିମନ୍ତ୍ରଣ କରି ଆଣୁଥିଲେ ।

ଥରେ ଜଣେ ଭିକ୍ଷୁ ପେଟ ରୋଗରେ ପୀଡ଼ିତ ହୋଇ ଖୁବ କଷ୍ଟ ପାଉଥିଲେ । ତାଙ୍କର ସେବା ଶୁଶ୍ରୂଷା କରିବାପାଇଁ ତାଙ୍କ ପାଖରେ ଜଣେ ହେଲେ କେହି ନ ଥିଲେ । ବୁଦ୍ଧ ଆନନ୍ଦଙ୍କୁ ସଙ୍ଗରେ ଧରି ନିଜେ ଯାଇ ତାଙ୍କର ସେବା ଶୁଶ୍ରୂଷା କରିଥିଲେ ଏବଂ ତାଙ୍କର ମଳମୂତ୍ର ସଫା କରିଥିଲେ । ପରେ ସେ ବୁଝିଲେ ଯେ, ଏ ରୋଗୀ ଭିକ୍ଷୁ ଜଣକ ଅନ୍ୟମାନଙ୍କର କିଛି ଉପକାର କରନ୍ତି ନାହିଁ ବୋଲି ଅନ୍ୟମାନେ ତାଙ୍କର ସେବା ଶୁଶ୍ରୂଷା କଲେ ନାହିଁ । ଏହି ସମ୍ପର୍କରେ ବୁଦ୍ଧ ଭିକ୍ଷୁମାନଙ୍କୁ ଡାକି କହିଲେ, "ଭିକ୍ଷୁଗଣ, ତୁମର କେହି ମାତା ନାହିଁ, ପିତା ନାହିଁ, ସ୍ତ୍ରୀ ନାହିଁ ବା ପୁତ୍ର ନାହିଁ ଯେ ତୁମର ସେବା କରିବେ । ତୁମେମାନେହିଁ କେବଳ ପରସ୍ପରକୁ ସାହାଯ୍ୟ କରିବ ଓ ପରସ୍ପର ସେବା କରିବ । ତା' ଯଦି ନ କରିବ, ତା'ହେଲେ ସଂଘ ଜୀବନ ରହିବ ନାହିଁ । ସଂଘ ଭିତରେ ଦୁଷ୍ଟ ପଶିଯିବ ।"

ସଂଘର ବାହାରେ ବୁଦ୍ଧଙ୍କର ଯେଉଁ ଶିଷ୍ୟ ଥିଲେ, ସେମାନଙ୍କୁ ଉପାସକ (ଗୃହୀ ଶିଷ୍ୟ) କୁହାଯାଉଥିଲା । ଉତ୍କଳର ବଣିକ ତପସ୍ସୁ ଓ ଭଲ୍ଲିକ ଥିଲେ ବୁଦ୍ଧଙ୍କର ପ୍ରଥମ ଗୃହୀ ଶିଷ୍ୟ । ତତ୍ପରେ ବୁଦ୍ଧଙ୍କର ଗୃହୀ ଶିଷ୍ୟଙ୍କ ମଧ୍ୟରେ

ତତ୍କାଳୀନ ଭାରତର ବହୁ ପ୍ରସିଦ୍ଧ ରାଜା, ମହାରାଜା, ବଣିକ ଓ ସମ୍ଭ୍ରାନ୍ତ ପରିବାରର ଲୋକ ଥିଲେ । ରାଜା, ମହାରାଜାଙ୍କ ମଧ୍ୟରେ ମଗଧର ରାଜା ବିମ୍ବିସାର ଓ ତାଙ୍କ ପୁତ୍ର ଅଜାତଶତ୍ରୁ, କୋଶଳର ରାଜା ପ୍ରସେନଜିତ, ବତ୍ସରାଜ ଉଦୟନ, ଭର୍ଗ ଦେଶର ରାଜା ବୋଧିରାଜକୁମାର ପ୍ରସିଦ୍ଧ ଥିଲେ । ବଣିକମାନଙ୍କ ମଧ୍ୟରେ ଅନାଥ ପିଣ୍ଡକ ପ୍ରଧାନ ଥିଲେ । ସ୍ତ୍ରୀ ଗୃହୀ ଶିଷ୍ୟଙ୍କ ମଧ୍ୟରେ ବିଶାଖା ଥିଲେ ପ୍ରଧାନ । ସେ ଭିକ୍ଷୁଣୀମାନଙ୍କ ପାଇଁ ଯାହା ବସ୍ତ୍ର ଦରକାର ପଡୁଥିଲା, ସବୁ ଯୋଗାଉଥିଲେ । ଏମାନଙ୍କ ଛଡ଼ା ତତ୍କାଳୀନ ଭାରତର ସର୍ବଶ୍ରେଷ୍ଠ ଚିକିତ୍ସକ ଜୀବକ କୁମାରଭୃତ୍ୟ ବୁଦ୍ଧଙ୍କର ଜଣେ ପ୍ରଧାନ ଉପାସକ ଥିଲେ ।

କଥିତ ଅଛି ଯେ କୋଶଳର ରାଜା ପ୍ରସେନଜିତ୍ ବୁଦ୍ଧଙ୍କ ଅଶୀବର୍ଷ ବୟସ ହେବାବେଳେ ଚନ୍ଦନକାଠରେ ତାଙ୍କର ଏକ ପ୍ରତିମୂର୍ତ୍ତି ନିର୍ମାଣ କରାଇଥିଲେ । ଏହି ମୂର୍ତ୍ତି ପରବର୍ତ୍ତୀ କାଳରେ ଗାନ୍ଧାର ଦେଶକୁ ନିଆଯାଇ-ଥିଲା ଏବଂ ଏହି ମୂର୍ତ୍ତିକୁ ଅନୁକରଣ କରି ବିଭିନ୍ନ ଯୁଗରେ ବୁଦ୍ଧଙ୍କର ମୂର୍ତ୍ତିମାନ ନିର୍ମିତ ହୋଇଥିଲା ।



## ଦେବଦତ୍ତର ବିଦ୍ରୋହ

ଯୀଶୁ ଖ୍ରୀଷ୍ଟଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଜୁଡାସ୍ ଯେପରି ବିଶ୍ୱାସ-ଘାତକତା କରି ତାଙ୍କର ଶତ୍ରୁ ରୂପେ ଠିଆ ହୋଇଥିଲା, ବୁଦ୍ଧଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଦେବଦତ୍ତ ଠିକ ସେହିପରି ଆଚରଣ କରିଥିଲା । ଭିକ୍ଷାର ଦୀକ୍ଷା ଗ୍ରହଣ କରି ଏବଂ ଭିକ୍ଷୁସଂଘ ଭିତରେ ଥାଇ ମଧ୍ୟ ବୁଦ୍ଧଙ୍କ ପ୍ରତି ତା'ର ମନ ସବୁବେଳେ ଈର୍ଷାରେ ପୂର୍ଣ ରହିଥିଲା ଏବଂ ବୁଦ୍ଧଙ୍କୁ ହତ୍ୟା କରିବା ପାଇଁ ବା ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ସେ ସବୁବେଳେ ସୁଯୋଗ ଖୋଜୁଥିଲା ।

ସେ ଦେଖିଲା, ଯେତେଦିନ ପର୍ଯ୍ୟନ୍ତ ବିମ୍ବିସାର ମଗଧରେ ରାଜପଣ କରୁଥିବେ, ସେତେବେଳ ପର୍ଯ୍ୟନ୍ତ ବୁଦ୍ଧଙ୍କର ପ୍ରତିପତ୍ତି ନଷ୍ଟ ହେବନାହିଁ । ରାଜା ବିମ୍ବିସାର ବୁଦ୍ଧଙ୍କର ଜଣେ ପ୍ରଧାନ ଉପାସକ । ତେଣୁ ତାଙ୍କୁ ହଟାଇବାକୁ ହେବ । ଦେବଦତ୍ତର ପାପପୂର୍ଣ୍ଣ ମନକୁ ଏକ ଉପାୟ ମଧ୍ୟ ଆସି ଜୁଟିଗଲା । ଯୁବରାଜ ଅଜାତଶତ୍ରୁ ଖୁବ୍ କ୍ଷମତାଲୋଭୀ ଥିଲେ । ଦେବଦତ୍ତ ପ୍ରଥମେ ଅଜାତ-ଶତ୍ରୁଙ୍କୁ ହାତର କରିବାପାଇଁ ଚେଷ୍ଟାକଲା । ଯୋଗବଳରେ ବହୁ ଐନ୍ଦ୍ରଜାଲିକ କୌଶଳ ଦେଖାଇ ସେ ଅଜାତଶତ୍ରୁଙ୍କର ମନକୁ ଅଭିଭୂତ କରିଦେଲା ।

ଅଜାତଶତ୍ରୁ ମନେକଲେ ଯେ, ଦେବଦତ୍ତ ଜଣେ ବଡ ସନ୍ନ୍ୟାସୀ ଏବଂ ଏ ସନ୍ନ୍ୟାସୀଙ୍କ ଆଶୀର୍ବାଦରେ ସେ ବହୁକାମ କରିପାରିବେ । ତେଣୁ ସେ ଦେବ-ଦତ୍ତର ଉପାସକ ହୋଇଗଲେ । ଦେବଦତ୍ତ ଯାହା ଖୋଜୁଥିଲା, ତାହା ହେଲା ।

ଅଜାତଶତ୍ରୁଙ୍କ ମନରେ ବିଶ୍ୱାସ ଜନ୍ମାଇବା ପରେ ଦିନେ ସେ ତାଙ୍କୁ ଏକାନ୍ତରେ ଡାକି କହିଲା, "ରାଜକୁମାର ! ମୁଁ ମଗଧର ଲୋକଙ୍କଠାରୁ ଶୁଣିଛି,

ତୁମେ ହିଁ ରାଜା ହେବାପାଇଁ ଉପଯୁକ୍ତ । ମାତ୍ର ତୁମର ପିତା ବୃଦ୍ଧ ଓ ରାଜକାର୍ଯ୍ୟ ଚଳାଇବାକୁ ଅକ୍ଷମ ହେଲେ ମଧ୍ୟ ତୁମକୁ ରାଜ୍ୟ ଛାଡ଼ୁନାହାନ୍ତି । ଛାଡ଼ିବାକୁ ତାଙ୍କର ଇଚ୍ଛା ଥିଲେ ସେ ଏ'ଣ ଆଜି ପର୍ଯ୍ୟନ୍ତ ରହିଥାନ୍ତେ ? ତୁମକୁ ରାଜପଦରୁ ବଞ୍ଚିତ କରିବା ତାଙ୍କର ଇଚ୍ଛା ।" ଏହିପରି ଅଜାତଶତ୍ରୁଙ୍କ ମନରେ ବିମ୍ବିସାରଙ୍କ ପ୍ରତି ଘୃଣା ସୃଷ୍ଟିକରି ଏବଂ ରାଜତ୍ୱର ଲାଳସା ଜାଗ୍ରତ କରି ପରେ ଦେବଦତ୍ତ ତାଙ୍କୁ ପ୍ରସ୍ତାବ ଦେଲା ଯେ, ବିମ୍ବିସାରଙ୍କୁ ହତ୍ୟା କରିବା ଛଡ଼ା ଅନ୍ୟ ବାଟ ନାହିଁ ।

ପରେ ରାଜା ବିମ୍ବିସାର ତାଙ୍କର ଶୟନ କକ୍ଷରେ ମଧ୍ୟାହ୍ନରେ ଶୋଇଥିବା ବେଳେ ଅଜାତଶତ୍ରୁ ଚୁପଚାପ ହାତରେ ଏକ ଛୁରୀ ନେଇ ଶୟନ କକ୍ଷରେ ପ୍ରବେଶ କଲେ । ରାଜାଙ୍କର ଦେହରକ୍ଷୀ ଯୁବରାଜଙ୍କୁ ଏପରି ଚୁପ ହୋଇ ଅନ୍ତଃପୁରରେ ପ୍ରବେଶ କରୁଥିବାର ଦେଖି ନିଜେ ଚୁପ ହୋଇ ତାଙ୍କର ପଛେ ପଛେ ଯାଇ ଦେଖିଲେ ରାଜାଙ୍କୁ ମାରିବାପାଇଁ ଅଜାତଶତ୍ରୁ ଛୁରୀ ବାହାର କରୁଛନ୍ତି । ସେ ସଙ୍ଗେ ସଙ୍ଗେ ଅଜାତଶତ୍ରୁଙ୍କୁ ଧରିନେଲା । ରାଜାଙ୍କର ନିଦ ଭାଙ୍ଗିବା ପରେ ବନ୍ଦୀ ଅଜାତଶତ୍ରୁଙ୍କୁ ତାଙ୍କ ଆଗକୁ ଅଣାଗଲା । ମନ୍ତ୍ରୀମାନେ କହିଲେ, ମୁଣ୍ଡକାଟ ହେବ । ମାତ୍ର ପୁତ୍ର ସ୍ନେହରେ ରାଜା ଅଜାତଶତ୍ରୁଙ୍କୁ ଯେ କେବଳ ମୁକ୍ତ କରିଦେଲେ ତା' ନୁହେଁ, ପୁତ୍ରର ରାଜା ହେବାର ପ୍ରବଳ ଇଚ୍ଛା ଦେଖି ତାଙ୍କୁ ରାଜପଦ ମଧ୍ୟ ଛାଡ଼ିଦେଲେ ।

ଦେବଦତ୍ତ ଦେଖିଲା ଯେ ତା'ର ମନସ୍କାମନା ପୂର୍ଣ୍ଣ ହେଲାନାହିଁ । ସେ ଅଜାତଶତ୍ରୁଙ୍କ ପାଖକୁ ପୁନର୍ବାର ଯାଇ କୁମନ୍ତ୍ରଣା ଦେବାକୁ ଲାଗିଲା । ବିମ୍ବିସାର ବଞ୍ଚି ଥିଲେ ତାଙ୍କର ମନ ପରିବର୍ତ୍ତନ କରି ପାରନ୍ତି । ବିମ୍ବିସାର ଥିବା ପର୍ଯ୍ୟନ୍ତ ଅଜାତଶତ୍ରୁଙ୍କର ରାଜ୍ୟ ନିରଙ୍କୁଶ ନୁହେଁ । ଅଜାତଶତ୍ରୁ ମଧ୍ୟ ଏଥିରେ ଭୁଲିଗଲେ । ସେ ବିମ୍ବିସାରଙ୍କୁ ବନ୍ଦୀକରି ରଖିଲେ । ନିର୍ଜନ ବନ୍ଦୀଶାଳାରେ ପଡ଼ି ବାର୍ଦ୍ଧକ୍ୟ ଓ ଦୁଃଖରେ ଅଳ୍ପ ଦିନ ପରେ ରାଜା ବିମ୍ବିସାରଙ୍କର ମୃତ୍ୟୁ ହେଲା ।

ବର୍ତ୍ତମାନ ଦେବଦତ୍ତ ନିଜକୁ ଶକ୍ତିଶାଳୀ ମନେକରି ବୁଦ୍ଧଙ୍କୁ ହତ୍ୟା କରିବାପାଇଁ କେତେଜଣ ଘାତକଙ୍କୁ ପଠାଇଲା । ମାତ୍ର ବୁଦ୍ଧଙ୍କ ଶରୀରର ତେଜ ଓ କରୁଣାଭରା ମୁଖମଣ୍ଡଳ ଦେଖି ଘାତକମାନେ ନିଜକୁ ସଙ୍କୁଚିତ ଅନୁଭବ

କଲେ । ସେମାନଙ୍କ ହାତରୁ ଅସ୍ତ୍ର ଖସି ପଡ଼ିଲା ଏବଂ ବୁଦ୍ଧଙ୍କ ପାଦତଳେ ପଡ଼ି ଯାଇ ସେମାନେ ନିଜର କୁକର୍ମ ପାଇଁ କ୍ଷମା ପ୍ରାର୍ଥନା କଲେ ।

ଦେବଦତ୍ତ ପ୍ରଥମ ଚେଷ୍ଟାରେ ବିଫଳ ହୋଇ ଅନ୍ୟ ଏକ ଉପାୟ ଚିନ୍ତାକଲା । ରାଜଗୃହରେ ସେତେବେଳେ ନାଳାଗିରି ନାମରେ ଏକ ଚଣ୍ଡହସ୍ତୀ ଥିଲା । ସେ ବହୁ ଲୋକ ମାରିଥିବା ଯୋଗୁଁ ତାକୁ ନରହନ୍ତା ହସ୍ତୀ ବୋଲି କୁହାଯାଉଥିଲା । ଦେବଦତ୍ତ ହାତୀର ମାହୁନ୍ତ ପାଖକୁ ଯାଇ କହିଲା, "ବୁଦ୍ଧ ରାଜଗୃହ ନଗରୀକୁ ଭିକ୍ଷା ପାଇଁ ଆସିଥିବା ବେଳେ ନାଳାଗିରି ହାତୀକୁ ଖୋଲି ଦେଇ ସେହି ରାସ୍ତାରେ ଛାଡ଼ିଦେବୁ ।"

ବୁଦ୍ଧ ସବୁଦିନ ପରି ସେଦିନ ବହୁ ଭିକ୍ଷୁଙ୍କ ସହିତ ପୂର୍ବାହ୍ଣ ସମୟରେ ରାଜଗୃହ ନଗରକୁ ଭିକ୍ଷା ପାଇଁ ବାହାରିଲେ । ବୁଦ୍ଧଙ୍କୁ ଦୂରରୁ ଆସୁଥିବାର ଦେଖି ମାହୁନ୍ତ ନାଳାଗିରି ହାତୀକୁ ରାସ୍ତା ଉପରେ ଛାଡ଼ି ଦେଲା । ଏହି ଚଣ୍ଡ-ହସ୍ତୀ ଉନ୍ମତ୍ତ ହୋଇ ବୁଦ୍ଧଙ୍କ ଆଡ଼କୁ ଦୌଡ଼ିବାକୁ ଲାଗିଲା । ଭିକ୍ଷୁମାନେ ଚିତ୍କାର କଲେ, "ଭଗବାନ, ଏ ନରହନ୍ତା ହସ୍ତୀ; ରାସ୍ତାରୁ ହଟି ଯାଆନ୍ତୁ । ପଳାଇ ଆସନ୍ତୁ, ତଥାଗତ !" ନଗରବାସୀମାନେ ନିଜ ନିଜ ଘର ଭିତରକୁ ପଶିଯାଇ ବୁଦ୍ଧଙ୍କୁ ରାସ୍ତାରୁ ହଟିଯିବା ପାଇଁ ଚିତ୍କାର କଲେ । ନାଳାଗିରି ଆଗରେ ଠିଆହୋଇ ନିଜର ଜୀବନ ଦେବା ପାଗଳ ଲୋକର କାର୍ଯ୍ୟ ଛଡ଼ା କିଛି ନୁହେଁ ବୋଲି ସେମାନେ କହିବାକୁ ଲାଗିଲେ ।

ମାତ୍ର ବୁଦ୍ଧ କାହାରି କଥା ନ ଶୁଣି ମନରେ ଭୟ ବା କ୍ରୋଧ ନ ରଖି କରୁଣାର୍ଦ୍ର ଚିତ୍ତରେ ନାଳାଗିରି ହସ୍ତୀର କଥା ଚିନ୍ତା କରିବାକୁ ଲାଗିଲେ । ବୁଦ୍ଧଙ୍କର ଭାବନା ନାଳାଗିରିର ହୃଦୟକୁ ସ୍ପର୍ଶ କଲା । ଅଳ୍ପସମୟ ପୂର୍ବେ ଯେଉଁ ହସ୍ତୀ କ୍ରୋଧରେ ଉନ୍ମତ୍ତ ହୋଇ ଦଉଡ଼ୁଥିଲା, ବୁଦ୍ଧଙ୍କର ପାଖରେ ପହଞ୍ଚି ଶୁଣ୍ଢକୁ ନୀଚ କରି ସେ ଧୀରସ୍ଥିର ଭାବରେ ଠିଆ ହୋଇଗଲା । ବୁଦ୍ଧ ହାତୀର ଶୁଣ୍ଢକୁ ନିଜର ଡାହାଣ ହାତରେ ଛୁଇଁ ଦେଲେ । ତତ୍‌କ୍ଷଣାତ୍ ନାଳାଗିରି ହାତୀ ବୁଦ୍ଧଙ୍କର ଚରଣ ଧୂଳି ଆଣି ନିଜ ମୁଣ୍ଡରେ ଲଗାଇଲା ଏବଂ ଆନନ୍ଦ ଧ୍ୱନି କରି ଫେରିଗଲା ।

ଏଥିରେ ଦେବଦତ୍ତ ବିଫଳ ହୋଇ ଭିକ୍ଷୁ ସଂଘ ମଧ୍ୟରେ ବିବାଦ ସୃଷ୍ଟି କରିବା ପାଇଁ ଚେଷ୍ଟା କଲା । ଦିନେ ଅପରାହ୍ନ ସମୟରେ ବୁଦ୍ଧ ଧର୍ମୋପଦେଶ ଶୁଣାଇ ସାରିବା ପରେ ଦେବଦତ୍ତ ଭିକ୍ଷୁମାନଙ୍କ ମଧ୍ୟରୁ ଉଠି ବୁଦ୍ଧଙ୍କୁ ପ୍ରଣାମ କରି କହିଲା, "ତଥାଗତ, ଆପଣ ବର୍ତ୍ତମାନ ବୃଦ୍ଧ । ଭିକ୍ଷୁ ସଂଘର ନେତୃତ୍ୱ ନେଇ ଦାୟିତ୍ୱ ଚଳାଇବା ପାଇଁ ଆପଣ ଅକ୍ଷମ । ମୋତେ ଏ ଦାୟିତ୍ୱ ଦେଇ ଆପଣ ନିଶ୍ଚିନ୍ତରେ ବିହାର କରନ୍ତୁ ।" ବୁଦ୍ଧ କହିଲେ, "ଦେବଦତ୍ତ, ମୁଁ ଏ ସଂଘର ନେତୃତ୍ୱ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କୁ ଦେଇ ନାହିଁ । ବାକି ତୋ'ପରି ଲୋକକୁ ଦେବାର ପ୍ରଶ୍ନ ଉଠୁଚି କୁଆଡୁ ?"

ଦେବଦତ୍ତ ଏଥିରେ ନିଜକୁ ବଡ଼ ଅପମାନିତ ବୋଧକରି କ୍ରୋଧରେ ନୂଆ ହୋଇ ଯେଉଁ ଯୁବକମାନେ ଭିକ୍ଷୁ ଧର୍ମ ଗ୍ରହଣ କରିଥିଲେ, ସେମାନଙ୍କୁ ସଂଘ ଭିତରେ ମତାଇବାକୁ ଲାଗିଲା । ଏହାପରେ ତାର ଜଣଙ୍କୁ ସାଥି କରି ସେ ବୁଦ୍ଧଙ୍କ ପାଖରେ ଯାଇ ପହଞ୍ଚି କହିଲା, "ଭଗବାନ, ବର୍ତ୍ତମାନ ଭିକ୍ଷୁମାନେ ଯେପରି ଜୀବନ ଯାପନ କରୁଛନ୍ତି, ତାହା ସନ୍ନ୍ୟାସୀ ପାଇଁ ଉପଯୁକ୍ତ ନୁହେଁ । ମୁଁ ପ୍ରସ୍ତାବ ଦେଉଛି ଯେ, (୧) ଭିକ୍ଷୁମାନେ କୌଣସି ଗାଁ ବା ସହରରେ ନ ରହି ଅରଣ୍ୟରେ ରହିବେ; (୨) ସେମାନେ ଭିକ୍ଷା ମାଗି କରି ଖାଇବେ, କେହି ଖାଇବାକୁ ନିମନ୍ତ୍ରଣ କଲେ ଯିବେ ନାହିଁ; (୩) ଏମାନେ ଜୀବନସାରା ଲୋକେ ଫିଙ୍ଗି ଦେଇଥିବା ଚିରା କନାକୁ ସିଲାଇ କରି ପିନ୍ଧିବେ ଏବଂ କେହି ବସ୍ତ୍ର ଦାନ କଲେ ତାହା ଗ୍ରହଣ କରିବେ ନାହିଁ, (୪) ଜୀବନସାରା ଗଛମୂଳରେ ରହିବେ, କୌଣସି ଘରେ ରହିବେ ନାହିଁ; (୫) କେବେ ମାଛ ମାଂସ ଖାଇବେ ନାହିଁ । ଏ ପାଞ୍ଚୋଟି ନିୟମ ଯେ ନ ମାନିବ, ସେ ଭିକ୍ଷୁ ହୋଇ ପାରିବ ନାହିଁ ।"

ବୁଦ୍ଧ କହିଲେ, "ଯେଉଁମାନେ ଏପରି ରହିବାକୁ ଚାହାନ୍ତି, ରହନ୍ତୁ, ସେଥିରେ ଆପତ୍ତି ନାହିଁ । ମାତ୍ର ମୁଁ ଏ ବିଷୟରେ କଡ଼ା ନିୟମ କରିବାକୁ ଚାହେଁ ନାହିଁ ।"

ଦେବଦତ୍ତ ଏହି ଉତ୍ତର ପାଇବାକୁ ଆଶା କରୁଥିଲା; ତେଣୁ ସେ ଖୁସି ହୋଇଯାଇ ଭିକ୍ଷୁମାନଙ୍କୁ ଡାକି କହିଲା, "ଦେଖ, ଭିକ୍ଷୁମାନେ ! ଏ ଗୌତମ

ଖୁବ ବେଗ ବଳାସରେ ରହିବାକୁ ଚାହେଁ । ମୁଁ ଭଲ କଥା କହିଲି, ସେ ଶୁଣିଲେ ନାହିଁ । ବର୍ତ୍ତମାନ ମୋ ସହିତ ଯେଉଁମାନେ ଏକମତ, ସେମାନେ ଆସନ୍ତୁ, ଆମେ ଏହି ନିୟମରେ ନୂଆ ସଂଘ ଗଠନ କରିବା ।"

ସେତେବେଳେ ବୈଶାଳୀରୁ କେତେକ ଯୁବକ ନୂଆ ହୋଇ ଭିକ୍ଷୁ ହୋଇଥିଲେ । ସେମାନେ ଦେବଦତ୍ତର କଥାରେ ରାଜି ହୋଇଗଲେ । ଏହିପରି ପାଞ୍ଚଶହ ଭିକ୍ଷୁଙ୍କୁ ଭୁଲାଇ ନେଇ ଏବଂ ସେମାନଙ୍କର ନେତା ସାଜି ଦେବଦତ୍ତ ଗୟାଶୀର୍ଷ ପର୍ବତକୁ ଚାଲିଗଲା ।

ବୁଦ୍ଧ ଏ ଖବର ପାଇ ଶାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କୁ ଡାକି କହିଲେ, "ଦେଖ ଶାରିପୁତ୍ର ! ଦେବଦତ୍ତ ପାଞ୍ଚଶହ ନୂଆ ଭିକ୍ଷୁଙ୍କୁ ଭୁଲାଇ ନେଇ ଚାଲିଗଲା । ତୁମର ଯଦି ଏ ଭିକ୍ଷୁମାନଙ୍କ ପ୍ରତି ଦୟା ଥାଏ, ତା'ହେଲେ ଏ ପାପାତ୍ମାର କବଳରୁ ତାଙ୍କୁ ମୁକ୍ତ କର ।"

ଶାରିପୁତ୍ର ଓ ମୌଦ୍‌ଗଲ୍ୟାୟନ ବୁଦ୍ଧଙ୍କର ଆଦେଶରେ ଗୟାଶୀର୍ଷ ପର୍ବତକୁ ଗଲେ । ଦେବଦତ୍ତ ଦୂରରୁ ଏମାନଙ୍କୁ ଦେଖି ମନେକଲା, ତା'ର ମତବାଦରେ ବର୍ତ୍ତମାନ ସମସ୍ତେ ବିଶ୍ୱାସ କଲେଣି । ବୁଦ୍ଧଙ୍କର ଭିକ୍ଷୁସଂଘ ଭାଙ୍ଗି ଗଲାଣି । ତା' ନ ହୋଇଥିଲେ ବୁଦ୍ଧଙ୍କର ପ୍ରଧାନ ଶିଷ୍ୟ ଶାରିପୁତ୍ର ଓ ମୌଦ୍‌ଗଲ୍ୟାୟନ କାହିଁକି ତା' ପାଖକୁ ଆସୁଥାନ୍ତେ ?

ଶାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କୁ ବସିବାକୁ କହି ଦେବଦତ୍ତ ବହୁତ ରାତି ପର୍ଯ୍ୟନ୍ତ ଭିକ୍ଷୁମାନଙ୍କୁ ଧର୍ମ କଥା କହିବା ପରେ ଯେତେବେଳେ କ୍ଳାନ୍ତ ଅନୁଭବ କଲା, ସେତେବେଳେ ଶାରିପୁତ୍ରଙ୍କୁ ଡାକି କହିଲା, "ଶାରିପୁତ୍ର, ଏ ଭିକ୍ଷୁମାନେ ଯୁବକ । ଏମାନେ ବହୁ ସମୟ ଧର୍ମକଥା ଶୁଣିବାକୁ ଚାହାନ୍ତି । ତୁମେ ଏମାନଙ୍କୁ ଧର୍ମ ଉପଦେଶ ଦିଅ । ମୋର ଏହି ନୂତନ ଧର୍ମକୁ ବଜାୟ ରଖ ।" ଏହା କହି ଦେବଦତ୍ତ ସଙ୍ଗର ଗୋଟିଏ ପାଖରେ ଢାଙ୍କିପାରି ଶୋଇଗଲା ।

ଶାରିପୁତ୍ର ଏବଂ ତାଙ୍କ ପରେ ମୌଦ୍‌ଗଲ୍ୟାୟନ ଅତି ମଧୁର ପ୍ରାଞ୍ଜଳ ଭାବରେ ବୁଦ୍ଧଙ୍କର ଧର୍ମମତ ବ୍ୟାଖ୍ୟାନ କଲେ । ସେମାନଙ୍କ ଭାଷଣରେ ଭିକ୍ଷୁମାନଙ୍କର

ଏପରି ହୃଦବୋଧ ହେଲା ଯେ, ସେମାନେ ଦେବଦତ୍ତର କୁମନ୍ତ୍ରଣାରେ ପଡ଼ି କେଉଁ ଭୁଲ କରିଛନ୍ତି, ତାହା ବୁଝିପାରିଲେ ।

ସାରିପୁତ୍ର ଭିକ୍ଷୁମାନଙ୍କୁ ସମ୍ବୋଧନ କରି କହିଲେ, "ଭିକ୍ଷୁମାନେ, ତୁମ ପାଇଁ ଭଗବାନ ବୁଦ୍ଧ ଅପେକ୍ଷା କରିଛନ୍ତି । ତୁମେ ଯାହାଙ୍କର ଧର୍ମକୁ ପସନ୍ଦ କରୁଛ, ତାଙ୍କ ପାଖକୁ ଫେରିଆସ ।"

ପାଞ୍ଚ ଶହ ଭିକ୍ଷୁ ତତ୍‌କ୍ଷଣାତ୍ ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କ ସହିତ ରାଜଗୃହର ବେଣୁବନକୁ ଫେରିଗଲେ । ଦେବଦତ୍ତ ଉଠି ଦେଖେ ତ, ତା' ଛଡ଼ା ସେଠାରେ ଆଉ କେହି ନାହାନ୍ତି ।

ଶେଷକୁ ଦେବଦତ୍ତ ଠିକ କଲା ଯେ, ସେ ନିଜେ ବୁଦ୍ଧଙ୍କୁ ହତ୍ୟା କରିବ । ସନ୍ଧ୍ୟା ସମୟରେ ବୁଦ୍ଧ ପ୍ରତିଦିନ ଏକାକୀ ଭ୍ରମଣରେ ବାହାରନ୍ତି । ବୁଦ୍ଧଙ୍କୁ ହତ୍ୟା କରିବାର ଏହା ଠିକ ସମୟ ବୋଲି ମନେକରି ଦେବଦତ୍ତ ତାଙ୍କ ଆସିବା ବାଟକୁ ଅପେକ୍ଷା କରି ରହିଲା । ବୁଦ୍ଧ ସେଦିନ ରାଜଗୃହ ନିକଟରେ ଥିବା ଗୃଧ୍ରକୂଟ ପର୍ବତର ଧାରରେ ଭ୍ରମଣ ପାଇଁ ବାହାରିଥିଲେ । ଦେବଦତ୍ତ ପାହାଡ଼ର ପାଖରେ ଲୁଚି ରହି ବୁଦ୍ଧ ସେ ବାଟରେ ଗଲାବେଳେ ହଠାତ୍ ଏକ ପ୍ରକାଣ୍ଡ ପଥର ପାହାଡ଼ରୁ ତାଙ୍କ ଆଡ଼କୁ ଗଡ଼ାଇ ଦେଲା । ମାତ୍ର ଦୁଇଟି ଗଛରେ ଲାଗି ଏ ପଥର ବୁଦ୍ଧଙ୍କ ଦେହରେ ବାଜି ପାରିଲା ନାହିଁ; ଏହି ପଥରର ଜୋରରେ ଖଣ୍ଡେ ଛୋଟ ପଥର ଖସି ଆସି ବୁଦ୍ଧଙ୍କର ପାଦରେ ବାଜିଲା ଏବଂ ପାଦରୁ ରୁଧିରର ଧାର ବହିବାକୁ ଲାଗିଲା । ମାତ୍ର ଦେବଦତ୍ତ ପ୍ରତି କୌଣସି ରାଗ ବା ହିଂସା ପୋଷଣ ନ କରି ବୁଦ୍ଧ ଏ ଯନ୍ତ୍ରଣା ସହିନେଲେ ।

ବୁଦ୍ଧଙ୍କର ସଂଘରୁ ଅଲଗା ହୋଇ ରହିବାର କିଛିକାଳ ପରେ ଦେବଦତ୍ତ ବହୁଦିନ ବେମାର ପଡ଼ି ଦିନେ ତା'ର ମନରେ ହଠାତ ଅନୁତାପ ଆସିଲା । ସେ ବୁଦ୍ଧଙ୍କର ଦର୍ଶନ ପାଇଁ ବ୍ୟାକୁଳ ହୋଇଉଠିଲା । ସେତେବେଳେ ବୁଦ୍ଧ ଶ୍ରାବସ୍ତିର ଜେତବନଠାରେ ରହୁଥିଲେ । ଦେବଦତ୍ତ ଏ ଖବର ପାଇ ଶ୍ରାବସ୍ତି ଅଭିମୁଖରେ ଯାତ୍ରା କଲା; ମାତ୍ର ଏହିପରି କଥା ଅଛି ଯେ ଦେବଦତ୍ତ

ନିଜର ପୂର୍ବକୃତ ପାପ ଯୋଗୁଁ ବୁଦ୍ଧଙ୍କର ଦର୍ଶନ ଲାଭ କରି ପାରିଲା ନାହିଁ ଏବଂ ଜେତବନର ଅଦୂରରେ ଥିବା ଏକ ପୁଷ୍କରିଣୀର କୂଳରେ ତା'ର ମୃତ୍ୟୁ ହେଲା ।

ବୁଦ୍ଧ ଏ ଖବର ପାଇ ଭିକ୍ଷୁମାନଙ୍କୁ କହିଲେ, ଦେବଦତ୍ତ ନିଜର କୁକର୍ମ ପାଇଁ ସଂସାରରେ ବହୁବାର ଜନ୍ମଲାଭ କରି ଦୁଃଖଭୋଗ କରିବ । ମାତ୍ର ଶେଷରୁ ସେ ଅର୍ହତ ଲାଭ କରିବ ।



# ପ୍ରଧାନ ଶିଷ୍ୟଙ୍କ ପରିନିର୍ବାଣ

ବୁଦ୍ଧଙ୍କର ପୂର୍ବରୁ ତାଙ୍କର ପ୍ରଧାନ ଶିଷ୍ୟଦ୍ୱୟଙ୍କର ମୃତ୍ୟୁ ହୋଇଗଲା । ଏହାପରି କଥିତ ଅଛି ଯେ, ମଗଧର ନାଳନ୍ଦ ଗ୍ରାମରେ ଭିକ୍ଷୁମାନଙ୍କ ସହ ଭ୍ରମଣ କରୁଥିବାବେଳେ ସାରିପୁତ୍ର ନିଜର ମୃତ୍ୟୁର ସମୟ ନିକଟ ହୋଇଗଲାଣି ବୋଲି ଅନୁଭବ କଲେ । ବୁଦ୍ଧ ସେତେବେଳେ ଶ୍ରାବସ୍ତିର ଜେତବନରେ ବିହାର କରୁଥିଲେ । ସାରିପୁତ୍ର ଏହି ଭିକ୍ଷୁମାନଙ୍କ ସହିତ ଶ୍ରାବସ୍ତି ଆସି ବୁଦ୍ଧଙ୍କର ଚରଣ ବନ୍ଦନା କରି କହିଲେ, "ତଥାଗତ, ଏହି ମୋର ଅନ୍ତିମ ଦର୍ଶନ । ଜୀବନର ଆୟୁଷ ଶେଷ ହୋଇଗଲା । ବହୁଜନ୍ମରେ ଏହି ଚରଣ ମୂଳରେ ବନ୍ଦନା କରିଛି । ଏ ଜନ୍ମ ମୋର ଓ ତଥାଗତଙ୍କର ଶେଷ ଜନ୍ମ ଏବଂ ଶେଷଥର ପାଇଁ ମୋର ଏ ନିବେଦନ । ଯଦି ଭୁଲବଶତଃ କିଛି କାର୍ଯ୍ୟ କରିଥାଏ, ତା'ହେଲେ ତଥାଗତ କ୍ଷମା କରିବେ ।"

ବୁଦ୍ଧ କହିଲେ, "ସାରିପୁତ୍ର, ଏପରି କିଛି କାର୍ଯ୍ୟ କରି ନାହଁ, ଯେଉଁଥିପାଇଁ ମୁଁ କ୍ଷମା ଦେବି ।" ତା'ପରେ ଭିକ୍ଷୁମାନଙ୍କୁ ଡାକି ବୁଦ୍ଧ କହିଲେ, "ଯେପରି ଚକ୍ରବର୍ତ୍ତୀ ରାଜାର ପୁତ୍ର ତା'ର ରାଜସ୍ୱକୁ ଅଖଣ୍ଡ ରଖେ, ସେହିପରି ଭିକ୍ଷୁଗଣ, ମୁଁ ଯେଉଁ ଧର୍ମଚକ୍ର ପ୍ରବର୍ତ୍ତନ କରିଛି, ତାହା ସାରିପୁତ୍ର ଅଖଣ୍ଡ ରଖିଛି । ମୁଁ ଅନ୍ୟ କୌଣସି ଭିକ୍ଷୁକୁ ଜାଣେ ନାହିଁ, ଯେ ସାରିପୁତ୍ରର ତୁଳନୀୟ ହେବ । ମୋର ଧର୍ମର ପ୍ରସାରକୁ ଯଦି ଦିଗ୍ବିଜୟର ସହିତ ତୁଳନା କରାଯାଏ, ତା' ହେଲେ ସାରିପୁତ୍ର ହେଉଛି ଯଥାର୍ଥରେ ଧର୍ମ-ସେନାପତି ।"

ସାରିପୁତ୍ରଙ୍କୁ ବିଦାୟ ଦେବାପାଇଁ ବୁଦ୍ଧ ଜେତବନର ଦ୍ୱାରଦେଶ ପର୍ଯ୍ୟନ୍ତ ଆସିଲେ ଏବଂ ଭିକ୍ଷୁ ସଂଘକୁ ତାଙ୍କର ଅନୁଗମନ କରିବା ପାଇଁ ଉପଦେଶ ଦେଲେ । ସାରିପୁତ୍ରଙ୍କର ଶେଷ ବିଦାୟର ସମ୍ବାଦ ପାଇ ଶ୍ରାବସ୍ତିର ନାଗରିକମାନେ ସଡ଼କର ଦୁଇଧାରରେ ଠିଆ ହୋଇ ଲୁହ ଛଳ ଛଳ ଆଖିରେ ତାଙ୍କୁ ବିଦାୟ ଦେଲେ ଏବଂ ବୁଦ୍ଧଙ୍କର ଏହି ଶ୍ରେଷ୍ଠ ଶିଷ୍ୟ ଓ ଧର୍ମ ସେନାପତିଙ୍କୁ ମାଳା ଚନ୍ଦନ ଦେଇ ଅଭ୍ୟର୍ଥନା କଲେ ।

ସାରିପୁତ୍ର ନଗରବାସୀ ଓ ଭିକ୍ଷୁ ସଂଘଠାରୁ ବିଦାୟ ନେଇ କହିଲେ, "ଏ ଦେହର ପକ୍ଷରେ ମୃତ୍ୟୁ ଅନିବାର୍ଯ୍ୟ । ସେଥିପାଇଁ ଶୋଚନା କରିବା ଅନୁଚିତ । ଧର୍ମ ହେଉଛି ଅକ୍ଷୟ ଓ ଧର୍ମର ହିଁ କାଳେ କାଳେ ଜୟ ହେବ ।"

ସାରିପୁତ୍ର ବାଟସାରା ଧର୍ମ ପ୍ରଚାର କରି ଆସି ସାତଦିନ ପରେ ନିଜର ଜନ୍ମସ୍ଥାନ ନାଳକ ଗ୍ରାମରେ ପହଞ୍ଚିଲେ ଏବଂ ନିଜର ବୃଦ୍ଧା ମାତାଙ୍କୁ ଧର୍ମ ଉପଦେଶ ଶୁଣାଇ ସମାଧିସ୍ଥ ହୋଇ ନିର୍ବାଣ ଲାଭ କଲେ ।

ଆନନ୍ଦଙ୍କଠାରୁ ସାରିପୁତ୍ରଙ୍କର ନିର୍ବାଣ ସମ୍ବାଦ ପାଇ ବୁଦ୍ଧ ଭିକ୍ଷୁସଂଘକୁ ଆମନ୍ତ୍ରଣ କରି କହିଲେ, "ଭିକ୍ଷୁଗଣ, ସାରିପୁତ୍ର ଥିଲେ ଜ୍ଞାନର ଆଧାର, କରୁଣାର ପ୍ରତିମୂର୍ତ୍ତି, ବିନମ୍ରୀ, ଜିତେନ୍ଦ୍ରିୟ, କ୍ଷମା ଗୁଣରେ ପୃଥିବୀର ସମାନ । ତୁମେ ନିର୍ବାଣ ପ୍ରାପ୍ତ ସାରିପୁତ୍ରଙ୍କୁ ବନ୍ଦନା କର ।" ବୁଦ୍ଧ ସାରିପୁତ୍ରଙ୍କର ଗୁଣ ଯେତେ ବର୍ଣ୍ଣନା କରୁଥିଲେ, ଆନନ୍ଦ ନିଜକୁ ସମ୍ଭାଳି ପାରୁ ନଥିଲେ । ତାଙ୍କ ଆଖିରୁ ଲୁହ ଧାର ବହି ଯାଉଥିଲା ।

କାର୍ତ୍ତିକ ପୂର୍ଣ୍ଣିମାଦିନ ସାରିପୁତ୍ରଙ୍କର ପରିନିର୍ବାଣ ହେଲା । ତା'ର ଠିକ୍ ପନ୍ଦର ଦିନ ପରେ ମୌଦ୍‌ଗଲ୍ୟାୟନ ମରିଗଲେ । ଗୋଟିଏ ବୃନ୍ତରେ ଦୁଇଟି ଫୁଲପରି ଥିଲେ, ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନ । ଏକ ସମୟରେ ସେମାନେ ଧର୍ମର ସାଧନା ଆରମ୍ଭ କରିଥିଲେ ଏବଂ ଏକ ସମୟରେ ସେମାନେ ବୁଦ୍ଧଙ୍କର ଭିକ୍ଷୁ ସଂଘରେ ଯୋଗ ଦେଇଥିଲେ । ସାରିପୁତ୍ରଙ୍କ ମୃତ୍ୟୁ ପରେ ଦୁଇଟି ଜୀବନର ଏହି ଏକମାତ୍ର ବୃନ୍ତଟି ଯେପରି ଦୋହଲି ଗଲା । ମୌଦ୍‌ଗଲ୍ୟାୟନ ବୁଦ୍ଧଙ୍କର ଅନୁମତି ନେଇ କାଳଶିଳା ପର୍ବତରେ ନିର୍ବାଣ ଲାଭକଲେ ।

ସାରିପୁତ୍ର, ମୌଦ୍‌ଗଲ୍ୟାୟନଙ୍କ ମୃତ୍ୟୁପରେ ବଜ୍ଜୀ ଦେଶର ଗଙ୍ଗା ନଦୀର କୂଳରେ ବିହାର କରୁଥିବା ସମୟରେ ବୁଦ୍ଧ ତାଙ୍କର ଭିକ୍ଷୁସଂଘକୁ ମୌନ ହୋଇ ବସିଥିବାର ଦେଖି କହିଲେ, "ଭିକ୍ଷୁଗଣ ! ମୋତେ ଏ ସଂଘ ଶୂନ୍ୟ ଜଣାପଡ଼ୁଛି । ସାରିପୁତ୍ର, ମୌଦ୍‌ଗଲ୍ୟାୟନ ଥିଲାବେଳେ ମୋତେ ଏପରି ଜଣାଯାଉ ନଥିଲା । ସେମାନେ ଯେଉଁ ଦିଗରେ ଥିଲେ, ସେ ଦିଗ ପୂର୍ଣ୍ଣ ହୋଇ ଉଠୁଥିଲା । ଏପରି ପ୍ରିୟଭକ୍ତ, ଏପରି ଶିଷ୍ୟ ଦୁର୍ଲ୍ଲଭ । ଅତୀତ କାଳରେ ଯେଉଁ-ମାନେ ବୁଦ୍ଧ ହୋଇଥିଲେ, ସେମାନଙ୍କର ମଧ୍ୟ ଏହିପରି ଅଗ୍ରଶିଷ୍ୟ ଥିଲେ । ଭବିଷ୍ୟତରେ ଯେଉଁମାନେ ବୁଦ୍ଧ ହେବେ, ସେମାନଙ୍କୁ ମଧ୍ୟ ଏହିପରି ଅଗ୍ରଶିଷ୍ୟ ମିଳିବେ । ଗଛ ଠିଆ ହୋଇ ରହିଥିବା ବେଳେ ଏହାର ଦୁଇଟି ପ୍ରଧାନ ଶାଖା ଖସି ପଡ଼ିଲେ ଯେପରି ଅବସ୍ଥା ହୁଏ, ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କ ପରିନିର୍ବାଣ ପରେ ତଥାଗତ ଓ ଭିକ୍ଷୁସଂଘର ସେହି ଅବସ୍ଥା ହୋଇଛି । ମାତ୍ର ଭିକ୍ଷୁଗଣ, ମୁଁ ଶୋକ କରୁନାହିଁ । କାରଣ ଏ ଶରୀର ନାଶଶୀଳ । ତୁମେମାନେ ମଧ୍ୟ ଶୋକ କର ନାହିଁ । ତୁମର ବିବେକ ହିଁ ତୁମର ପ୍ରଦୀପ ହେଉ ।"

ବୁଦ୍ଧଙ୍କର ପ୍ରଧାନ ବାରଜଣ ଶିଷ୍ୟଙ୍କ ମଧ୍ୟରେ ସାରିପୁତ୍ର ଓ ମୌଦ୍‌-ଗଲ୍ୟାୟନ ଥିଲେ ପ୍ରଧାନ । ଆନନ୍ଦ ମଧ୍ୟ ଏହି ବାରଜଣ ଶିଷ୍ୟଙ୍କ ମଧ୍ୟରେ ଜଣେ ଥିଲେ । ଏହି ସ୍ନେହଶୀଳ, ଭାବପ୍ରବଣ, ସୌମ୍ୟ-ଦର୍ଶନ ଭିକ୍ଷୁ ବୌଦ୍ଧ ଧର୍ମଶାସ୍ତ୍ରରେ ପ୍ରସିଦ୍ଧ ହୋଇ ଉଠିଛନ୍ତି । ମହାପ୍ରଜାପତି ଓ ଶାକ୍ୟ କୁଳବଧୂ-ମାନଙ୍କର ଧୂଳିଧୂସର ପାଦ, ଦେହ ଓ ଲୁହ ଛଳ ଛଳ ଆଖି ଦେଖି ତାଙ୍କର ଆଖିରେ ଲୁହ ଆସି ଯାଉଛି । ସେ ଯାଇ ଏମାନଙ୍କ ପାଇଁ ତଥା-ଗତଙ୍କୁ ଆବେଦନ କରୁଛନ୍ତି । ସାରିପୁତ୍ର ଓ ମୌଦ୍‌ଗଲ୍ୟାୟନଙ୍କ ମୃତ୍ୟୁ ପରେ ତାଙ୍କର ପୁଣ ବର୍ତ୍ତନା ହେଲା ବେଳେ ଆନନ୍ଦଙ୍କ ମୁହଁରେ ଲୁହ ଧାର ବହି ଯାଉଛି । ବୁଦ୍ଧଙ୍କର ନିର୍ବାଣ ସମୟ ହେବାର ଜାଣିପାରି ସେ ମୁହଁ ଲୁଚାଇ ପିଲାଙ୍କ ପରି କାନ୍ଦୁଛନ୍ତି । ବୁଦ୍ଧଙ୍କର ଉପଦେଶ, "ଶରୀର ନାଶଶୀଳ, ଶୋକ କର ନାହିଁ ।" ମାତ୍ର ଭିକ୍ଷୁ ଆନନ୍ଦଙ୍କର ଭାବପ୍ରବଣତା ଏ ମତ ମାନୁନାହିଁ । ଆନନ୍ଦ ଯେ ବୁଦ୍ଧଙ୍କର ଉପଦେଶ ମାନୁ ନ ଥିଲେ, ଏହା ନୁହେଁ । ସେ ଥିଲେ ବୁଦ୍ଧଙ୍କର ପ୍ରିୟତମ ଶିଷ୍ୟ । ବୁଦ୍ଧ ବୃଦ୍ଧ ହୋଇଗଲା ପରେ ତାଙ୍କର ମୁଖ୍ୟ

ପର୍ଯ୍ୟନ୍ତ ସେ ତାଙ୍କ ପାଖେ ପାଖେ ରହୁଥିଲେ ଏବଂ ତାଙ୍କର ପରିଚର୍ଯ୍ୟା କରୁଥିଲେ । ବୁଦ୍ଧ କିପରି ଆନନ୍ଦଙ୍କୁ ସ୍ନେହ କରୁଥିଲେ ଏବଂ ସେ ତାଙ୍କ ପାଖରେ ରହନ୍ତୁ ବୋଲି କାମନା କରୁଥିଲେ, ସେ ସମ୍ପର୍କରେ ଏକ କାହାଣୀ ଅଛି ।

ବୁଦ୍ଧଙ୍କୁ ୫୨ ବର୍ଷ ବୟସ ବେଳେ ସେ ଭିକ୍ଷୁମାନଙ୍କୁ ଡାକି କହିଲେ, "ଭିକ୍ଷୁମାନେ, ମୁଁ ବର୍ତ୍ତମାନ ବୃଦ୍ଧ । ଦୂର ବାଟକୁ ଗଲାବେଳେ ମୋର ପାତ୍ର ଓ ବସ୍ତ୍ର କେହି ଜଣେ ଧରିନେବା ଦରକାର ପଡୁଛି । ବେଳେ ବେଳେ ମଧ୍ୟ ମୋର ପରିଚର୍ଯ୍ୟା ଆବଶ୍ୟକ ହେଉଛି । କେହି ଜଣେ ଭିକ୍ଷୁ ମୋର ପରିଚାରକ ହୁଅନ୍ତୁ ।"

ସାରିପୁତ୍ର, ମୌଦ୍‌ଗଲ୍ୟାୟନ, ଉପାଲି, ଅନୁରୁଦ୍ଧ ପ୍ରଭୃତି ଭିକ୍ଷୁମାନେ ସାଙ୍ଗେ ସାଙ୍ଗେ ଉଠି ଠିଆ ହେଲେ । ସମସ୍ତଙ୍କୁ ବୁଦ୍ଧ ମନା କରିଦେଲେ । ସମସ୍ତେ ଠିଆ ହେଲେ । ମାତ୍ର ଆନନ୍ଦ ଚୁପ୍ ହୋଇ ବସି ରହିଥିଲେ । କେହି କେହି ଭିକ୍ଷୁ ଆନନ୍ଦଙ୍କୁ ଠିଆ ହେବା ପାଇଁ କହିବାରୁ ଆନନ୍ଦ କହିଲେ, "ତଥାଗତ କ'ଣ ମୋତେ ଦେଖି ପାରୁ ନାହାନ୍ତି ? ଯଦି ତାଙ୍କର ଇଚ୍ଛା ଥିବ ତା'ହେଲେ କହିବେ, 'ଆନନ୍ଦ ତୁ ମୋର ପରିଚାରକ ହୁଅ ।' ବୁଦ୍ଧ ଅଳ୍ପ ହସି କହିଲେ, "ଆନନ୍ଦକୁ କେହି ପ୍ରବର୍ତ୍ତାଇବା ଦରକାର ନାହିଁ । ସେ ଜାଣେ ଯେ, ସେ ମୋର ପରିଚାରକ ହେବ ।" ଆନନ୍ଦ କହିଲେ, "ତଥାଗତ, ମୁଁ ଆପଣଙ୍କ ପରିଚାରକ ହେବା ପୂର୍ବରୁ ଚାରୋଟି ପ୍ରାର୍ଥନା ମୋର ଶୁଣିବାକୁ ହେବ । ପ୍ରଥମ ହେଉଛି, ତଥାଗତଙ୍କୁ କେହି ଉତ୍ତମ ବସ୍ତ୍ର ବା ଭୋଜନ ଦାନ କଲେ, ତଥାଗତ ମୋତେ ତାହା ଦେବେ ନାହିଁ ଏବଂ ତଥାଗତଙ୍କୁ ଯେଉଁଠି ବ୍ୟକ୍ତିଗତ ଭାବରେ ନିମନ୍ତ୍ରଣ ମିଳିବ, ମୋତେ ସାଙ୍ଗରେ ନେବେ ନାହିଁ । ଦ୍ୱିତୀୟ ନିବେଦନ ହେଉଛି, ଦୂର ଦେଶରୁ ଯଦି କେହି ତଥାଗତଙ୍କ ଦର୍ଶନ ପାଇଁ ଆସେ ତା' ହେଲେ, ମୁଁ ସାକ୍ଷାତ କରାଇ ପାରିବି । ତୃତୀୟ ହେଉଛି, ଯେତେବେଳେ ମୋର ଇଚ୍ଛା ହେବ ମୁଁ ତଥାଗତଙ୍କ ପାଖକୁ ଯାଇ ପାରିବି । ଚତୁର୍ଥ, ଯଦି ମୁଁ ନ ଥିବା ବେଳେ ତଥାଗତ କୌଣସି ଧର୍ମ ଉପଦେଶ ଦିଅନ୍ତି, ତା' ହେଲେ ମୋତେ ତାହା ପୁଣି ଥରେ ଶୁଣାଇବେ ।" ବୁଦ୍ଧ ଆନନ୍ଦଙ୍କର ଏହି ପ୍ରାର୍ଥନା ସ୍ୱୀକାର କରିଥିଲେ ।

ମୃତ୍ୟୁର ଅଳ୍ପକାଳ ପୂର୍ବରୁ ବୁଦ୍ଧ ଭିକ୍ଷୁମାନଙ୍କ ଆଗରେ ଆନନ୍ଦଙ୍କ ପ୍ରଶଂସାକରି କହିଥିଲେ, "ଭିକ୍ଷୁମାନେ, ଆନନ୍ଦ ବିନୟୀ ଓ ସ୍ନେହଶୀଳ । ସେ ସବୁ ଧର୍ମ ଉପଦେଶ ମନେ ରଖି ପାରନ୍ତି । ତାଙ୍କ ପ୍ରତି ଭିକ୍ଷୁମାନେ ଏପରି ଅନୁରକ୍ତ ଯେ ତାଙ୍କର ମଧୁର ଭାଷଣ ଶୁଣିବା ପାଇଁ ସମସ୍ତଙ୍କୁ ଆନନ୍ଦ ଲାଗେ । ଆନନ୍ଦ ଚୁପ ହୋଇ ବସିଥିବାର ଦେଖିଲେ ସମସ୍ତେ ଉଦ୍‌ବିଗ୍ନ ହୋଇଉଠନ୍ତି । ତାଙ୍କପରି ପରିବ୍ରାଜକ ମିଳିବା ଦୁର୍ଲଭ ।"

ବୁଦ୍ଧଙ୍କର ମୃତ୍ୟୁ ପରେ ଆନନ୍ଦ ବହୁଦିନ ବଞ୍ଚିଥିଲେ । ରାଜଗୃହରୁ ପ୍ରଥମ ବୌଦ୍ଧ ମହାସଭା ବା ସଙ୍ଗୀତିରେ ସେ ବିଶେଷ ଭାଗ ନେଇଥିଲେ । ବୁଦ୍ଧଙ୍କର ମୁଖ ନିଃସୃତ ଧର୍ମ ଉପଦେଶ ସେ ଧର୍ମଗୁରୁଙ୍କଠାରୁ ବେଶୀ ଶୁଣି-ଥିବା ଯୋଗୁଁ ଭିକ୍ଷୁମାନେ ଆସି ତାଙ୍କଠାରୁ ସନ୍ଦେହ ମୋଚନ କରୁଥିଲେ ।

# ମହାପରିନିର୍ବାଣ

ଗୌତମ ବୁଦ୍ଧ ତାଙ୍କର ମୃତ୍ୟୁ ପାଇଁ ଶିଷ୍ୟ ବର୍ଗଙ୍କୁ ପ୍ରସ୍ତୁତ କରୁଥିଲେ । ଜୀବନର ଶେଷ ଅଡ଼କୁ ବାରମ୍ବାର ସେ ଉପଦେଶ ଦେଉଥିଲେ ଯେ, ଏ ଦେହ ନାଶଶୀଳ । ଯେ ତୁମର ପ୍ରିୟ, ଯାହା ସହିତ ତୁମେ ଘନିଷ୍ଠ ଭାବରେ ସଂପୃକ୍ତ, ତାକୁ ଦିନେ ତୁମଠାରୁ ଓ ଏ ସଂସାରରୁ ବିଦାୟ ନେବାକୁ ହେବ । ତେଣୁ ଶୋକ କର ନାହିଁ, ମମତାର ବନ୍ଧନ ରଖ ନାହିଁ ।

ବୁଦ୍ଧଙ୍କୁ ସେତେବେଳେ ଅଶୀବର୍ଷ ବୟସ । ଶରୀରରେ ସେ ଦୁର୍ବଳତା ଅନୁଭବ କରୁଥାନ୍ତି । ଥରେ ସେ ଆନନ୍ଦଙ୍କୁ ଡାକି କହିଲେ, "ଆନନ୍ଦ, ମୁଁ ବୁଢ଼ା ହୋଇଗଲିଣି । ଅଶୀବର୍ଷ ବୟସ ହୋଇଗଲାଣି । ଶଗଡ଼ ବହୁତ ପୁରୁଣା ହୋଇଗଲେ ତାକୁ ଯେପରି ଯୋଡ଼ାଜୋଡ଼ି କରି ବନ୍ଧାବନ୍ଧି କରି ଚଳାଇବାକୁ ହୁଏ, ମୋତେ ବର୍ତ୍ତମାନ ସେହିପରି ଚଳିବାକୁ ହେଉଛି ।" ମାତ୍ର ଏପରି ଅବସ୍ଥାରେ ମଧ୍ୟ ବୁଦ୍ଧ ଦିନେମାତ୍ର ବିଶ୍ରାମ ନେଇ ନାହାନ୍ତି । ବୁଦ୍ଧତ୍ୱ ଲାଭ କରିବା ଦିନଠାରୁ ୪୫ ବର୍ଷ କାଳ ସେ ପାଦରେ ବୁଲି ବୁଲି ଯେଉଁ ପ୍ରବ୍ରଜ୍ୟା ଜୀବନର ଦୀକ୍ଷା ନେଇଛନ୍ତି, ମୃତ୍ୟୁ ପର୍ଯ୍ୟନ୍ତ ସେଥିରୁ ତିଳେମାତ୍ର ବିରତ ହୋଇ ନାହାନ୍ତି । ରୋଗ ବା ବାର୍ଦ୍ଧକ୍ୟ ତାଙ୍କର ମନୋବଳକୁ ସ୍ପର୍ଶି ପାରି ନାହିଁ । ତାଙ୍କ ପାଖକୁ ଯେ ଚର୍ଚ୍ଚା କରିବାକୁ ଆସିଛି, ଉପଦେଶ ମାଗିବାକୁ ଆସିଛି, ମୃତ୍ୟୁ ଶଯ୍ୟାରେ ଥାଇ ମଧ୍ୟ ତାକୁ ସେ ଫେରାଇ ଦେଇ ନାହାନ୍ତି ।

ମୃତ୍ୟୁର କିଛି ଦିନ ପୂର୍ବରୁ ତାଙ୍କର ପଦଯାତ୍ରା ଓ ଉପଦେଶ ଯେଉଁ-ଥିରେ ଲିପିବଦ୍ଧ ହୋଇଛି, ତାକୁ "ମହାପରିନିର୍ବାଣ ସୂତ୍ର, ବୋଲି କୁହାଯାଏ । ଏହି ସୂତ୍ରରେ ତାଙ୍କର ଜୀବନର ଶେଷ ପର୍ଯ୍ୟାୟ ଖୁବ୍ ନିଖୁଣ ଭାବରେ ଚିତ୍ରଣ କରାଯାଇଛି ।

ବୁଦ୍ଧ ମଗଧର ରାଜଧାନୀ ରାଜଗୃହଠାରୁ ଉତ୍ତରକୁ ଯାତ୍ରା କଲେ । ବାଟରେ ନାଳନ୍ଦାର ଆମ୍ରବନରେ ସେ କିଛି ସମୟ କଟାଇଥିଲେ । ପାଟଳୀ ଗ୍ରାମଠାରେ ସେ ଗଙ୍ଗାନଦୀ ପାର ହେଲେ । ପାଟଳୀ ଗ୍ରାମଠାରେ ସେତେ-ବେଳେ ମଗଧର ରାଜା ଅଜାତଶତ୍ରୁଙ୍କ ଦ୍ୱାରା ଏକ ଦୁର୍ଗ ନିର୍ମିତ ହେଉଥିଲା । ବୁଦ୍ଧ ଆନନ୍ଦଙ୍କୁ ଭବିଷ୍ୟଦ୍‌ବାଣୀ କରିଥିଲେ ଯେ, ଏହି ପାଟଳୀ ଗ୍ରାମ ଦିନେ ଭାରତରେ ପାଟଳିପୁତ୍ର ନଗର ନାମରେ ପ୍ରସିଦ୍ଧ ହେବ । ମାତ୍ର ପାଟଳିପୁତ୍ର ନଗରକୁ ତିନୋଟି ବିପଦ ରହିବ—ଅଗ୍ନି, ପାଣି ଓ ଅନ୍ତର୍ବିବାଦ ।

ମଗଧ ରାଜ୍ୟ ଅତିକ୍ରମ କରି ବୁଦ୍ଧ ବୈଶାଳୀର ଗଣରାଜ୍ୟରେ ପହଞ୍ଚିଲେ । ବୁଦ୍ଧଙ୍କର ଆସିବାର ସମ୍ବାଦ ପାଇ ବୈଶାଳୀର ଅଧିବାସୀମାନେ ସୁନ୍ଦର ସୁନ୍ଦର ଯାନରେ ଚଢ଼ି ଓ ସୁନ୍ଦର ବସ୍ତ୍ର ପରିଧାନ କରି ତାଙ୍କୁ ଆସି ଅଭି-ବାଦନ କଲେ । ବୈଶାଳୀ ସେତେବେଳେ ଖୁବ୍ ଶକ୍ତିଶାଳୀ ଓ ଧନଶାଳୀ ରାଜ୍ୟ ଥିଲା । ଆନନ୍ଦଙ୍କ ଆଗରେ ବୁଦ୍ଧ ବୈଶାଳୀର ନାଗରିକମାନଙ୍କୁ ଦେବତାମାନଙ୍କ ସହ ତୁଳନା କରିଥିଲେ । ଏହିଠାରେ ଗଣିକା ଆମ୍ରପାଲି ତାଙ୍କୁ ଅଭ୍ୟର୍ଥନା କରିଥିଲା ଏବଂ ତା'ର ପ୍ରସିଦ୍ଧ ଆମ୍ରବନ ଦାନ କରିଥିଲା ।

ଏହି ବୈଶାଳୀର ବେଲୁବ ଗ୍ରାମରେ ବୁଦ୍ଧ ତାଙ୍କର ବର୍ଷା ତିନିମାସ କଟାଇଥିଲେ । ଅନ୍ୟ ଭିକ୍ଷୁମାନଙ୍କୁ ନିକଟବର୍ତ୍ତୀ ଗ୍ରାମ ଓ ସହରରେ ନିଜ ସୁବିଧା ଅନୁସାରେ ରହିବାକୁ କହି ସେ ଏକାକୀ ଏଠାରେ ବର୍ଷା-ବାସ କରି-ଥିଲେ । ଜୀବନରେ ତାଙ୍କର ଏ ଶେଷ ବର୍ଷାବାସ । ଏହି ସମୟରେ ସେ ଖୁବ୍ ବେମାରରେ ପଡ଼ିଗଲେ । ଏତେ କଷ୍ଟ ହେଲା ଯେ, ସେ ମନେକଲେ ଏ ହେଉଛି ମରଣର ଡାକ । ମାତ୍ର ସେ ପୁଣି ଭାବିଲେ, ତାଙ୍କର ଶିଷ୍ୟମାନଙ୍କୁ

ନ କହି, ନ ଦେଖି ସେ କେବେ ନିର୍ବାଣପ୍ରାପ୍ତ ହେବେ ନାହିଁ । ମନର ବଳରେ ସେ ଏ ରୋଗକୁ ବନ୍ଦ କରିଦେଲେ ଏବଂ ସୁସ୍ଥ ହୋଇଗଲେ ।

ଜୀବନର ପ୍ରିୟତମ ତଥାଗତଙ୍କର ଏ ଅବସ୍ଥା ଦେଖି ଆନନ୍ଦଙ୍କ ଦେହରେ ଜୀବନ ନଥିଲା । ସୁସ୍ଥ ହୋଇସିବା ପରେ ବୁଦ୍ଧଙ୍କୁ ସେ ଯାଇ କହିଲେ, "ଭଗବାନ, ଆପଣଙ୍କର ଏ ପୀଡ଼ା ଦେଖି ମୋତେ ସ୍ୱରଅନ୍ତ ଶୂନ୍ୟ ଜଣାଯାଉଥିଲା । ମନରେ କେବଳ ଏତିକି ଆଶ୍ୱାସନା ଥିଲା ଯେ ଭିକ୍ଷୁ ସଂଘକୁ କିଛି ନ କହି ଭଗବାନ ପରିନିର୍ବାଣ କରିବେ ନାହିଁ ।"

ବୁଦ୍ଧ କହିଲେ, "ଆନନ୍ଦ, ଭିକ୍ଷୁ ସଂଘର ଆଉ କ'ଣ ଦରକାର ? ଜୀବନ ସାରା ମୁଁ ଧର୍ମ ଉପଦେଶ ଦେଇ ଆସିଲି । ସଂଘ ଜାଣିବା ଭଳି କୌଣସି କଥା ମୁଁ ନ କହି ବାକୀ ରଖିନାହିଁ । ତେଣୁ ମୋର ଜୀବନ ଉପରେ ଏତେ ଆସ୍ଥା ନରଖି ନିଜ ଉପରେ ଆସ୍ଥା ରଖ । ତୁମେ ତୁମର ଦୀପ ସ୍ୱରୂପ ହୁଅ ।"

ବର୍ଷାକାଳ ପରେ ବୁଦ୍ଧ ପୁଣି ତାଙ୍କର ଯାତ୍ରା ଆରମ୍ଭ କରିବା ପୂର୍ବରୁ ଭିକ୍ଷୁ ସଂଘକୁ ନିମନ୍ତ୍ରଣ କରି କହିଥିଲେ, "ତୁମକୁ ମୋର ଡାକିବାର ଉଦ୍ଦେଶ୍ୟ ହେଉଛି, ମୁଁ ଯେଉଁ ଧର୍ମ ଉପଦେଶ ଦେଇଛି, ତାକୁ ଭଲରୂପେ ଚିନ୍ତା କରି, ଧାରଣା କରି ବହୁ ଲୋକଙ୍କର ହିତ ଓ ସୁଖ ପାଇଁ ତା'ର ପ୍ରଚାର କରିବ । ମୋର ଉପଦେଶ ଚାରି ସତ୍ୟ ଓ ଅଠ ଆର୍ଯ୍ୟଧର୍ମ ବା ଆର୍ଯ୍ୟ ଅଷ୍ଟାଙ୍ଗିକ ମାର୍ଗ ନାମରେ ଖ୍ୟାତ । ଏହି ଧର୍ମର ହିଁ ତୁମେ ପ୍ରଚାର କରିବ । ଅଳ୍ପକାଳ ପରେ ତଥାଗତଙ୍କର ପରିନିର୍ବାଣ ହେବ । ଆଜିଠାରୁ ତିନିମାସ ପରେ ତଥାଗତ ପରିନିର୍ବାଣ ଲାଭ କରିବେ ।" ଏହିପରି କଥିତ ଅଛି ଯେ, ବୁଦ୍ଧଙ୍କର ଏହି ଘୋଷଣାରେ ଆକାଶରୁ ବଜ୍ରପାତ ହେଲା ଓ ପୃଥିବୀ କମ୍ପି ଉଠିଲା ।

ବୈଶାଳୀ ଛାଡ଼ିସିବା ପୂର୍ବରୁ ବୁଦ୍ଧ ଥରେ ବୁଲିପଡ଼ି ବୈଶାଳୀକୁ ଭଲ ରୂପେ ଦେଖିନେଲେ ଏବଂ ଆନନ୍ଦଙ୍କୁ ଡାକି କହିଲେ, "ଆନନ୍ଦ ତଥାଗତଙ୍କର ଏହା ଅନ୍ତିମ ବୈଶାଳୀ ଦର୍ଶନ ।"

ବୈଶାଳୀରୁ ବୁଦ୍ଧ କୁଶୀନାରା ଯାତ୍ରା କଲେ । ବାଟରେ ପାବା ନାମକ ନଗରୀ ପଡ଼ିଲା । ଏଠାରେ ଚୁନ୍ଦ ନାମକ ଜଣେ ଧନୀ କମାର ବୁଦ୍ଧଙ୍କର

ଉପାସକ ଥିଲା । ବୁଦ୍ଧ ତା'ର ଆମ୍ରବନରେ ଅବସ୍ଥାନ କରୁଥିବା ଶୁଣି ଚନ୍ଦ୍ର ଭିକ୍ଷୁସଂଘ ସହ ବୁଦ୍ଧଙ୍କୁ ପରଦିନ ଭୋଜନ ପାଇଁ ନିମନ୍ତ୍ରଣ କଲା । ଏହି ଭୋଜନ ହିଁ ହେଲା ତାଙ୍କର ଅନ୍ତିମ ଭୋଜନ । ଚନ୍ଦ୍ର ଯେଉଁ ଖାଦ୍ୟ ପ୍ରସ୍ତୁତ କରିଥିଲା, ତାହା ଅତ୍ୟନ୍ତ ସୁସ୍ୱାଦୁ ଥିଲା । 'ଶୂକର ମାର୍ଦ୍ଦବ' ନାମରେ ପ୍ରସ୍ତୁତ ମାଂସରେ ସେ ଏକପ୍ରକାର ଖାଦ୍ୟ ପ୍ରସ୍ତୁତ କରିଥିଲା । ଏହି ଖାଦ୍ୟ ଖାଇ ବୁଦ୍ଧ ଶରୀରରେ ଘୋର ଯନ୍ତ୍ରଣା ଅନୁଭବ କଲେ । ମାତ୍ର ଶାନ୍ତ ଚିତ୍ତରେ ଏ ଯନ୍ତ୍ରଣା ସହି ନେଇ ସେ ପାବାଠାରୁ କୁଶୀନଗର ଅଭିମୁଖରେ ଗ୍ଲଲେ । ବାଟରେ କକୁତ୍ଥା ନଦୀରେ ଗାଧୋଇ ଓ ପାଣି ପିଇ ନଦୀକୂଳର ଆମ୍ରତୋଟାରେ ନିଜ ଦେହରେ ଘୋଡ଼ାଇ ହୋଇଥିବା ଲୁଗାକୁ ପାରି କରି ସମସ୍ତ ବିଶ୍ରାମ ନେଲେ । ଚନ୍ଦ୍ରଠାରୁ ଖାଦ୍ୟ ଖାଇ ତଥାଗତ ଏପରି ଯନ୍ତ୍ରଣା ଅନୁଭବ କରୁଛନ୍ତି ବୋଲି ଭିକ୍ଷୁମାନେ ଚନ୍ଦ୍ରକୁ ନିନ୍ଦା କରିବାକୁ ଲାଗିଲେ । ମାତ୍ର ବୁଦ୍ଧ ଆନନ୍ଦଙ୍କୁ ଡ଼ାକି କହିଲେ, "ଦେଖ ଆନନ୍ଦ, ଚନ୍ଦ୍ରକୁ ଦୋଷ ଦିଅ ନାହିଁ । ବରଂ ତାକୁ ଡ଼ାକି କହିବ—ଚନ୍ଦ୍ର, ତଥାଗତ ତୋତେ ପ୍ରଶଂସା କରୁଥିଲେ, କାରଣ ତୋ'ଠାରୁ ଖାଇବା ପରେ ତାଙ୍କର ପରିନିର୍ବାଣ ହେଲା; ତାଙ୍କୁ ମୋକ୍ଷର ଶାନ୍ତି ମିଳିଲା ।"

ତା'ପରେ ବୁଦ୍ଧ ହିରଣ୍ୟବତୀ ନଦୀକୂଳରେ କୁଶୀନାରାର ମଲ୍ଲମାନଙ୍କର ଶାଲବନରେ ପହଞ୍ଚିଲେ । ସେତେବେଳେ ତାଙ୍କୁ ଖୁବ କ୍ଳାନ୍ତ ଓ ଅବଶ ଲାଗିଲା । ଏହି ଶାଲବନରେ ଦୁଇଟି ଶାଳଗଛ ମଝିରେ ତାଙ୍କ ପାଇଁ ବିଛଣା କରିଦେବାକୁ ସେ ଆନନ୍ଦଙ୍କୁ ଅନୁରୋଧ କଲେ । ବିଛଣା ହୋଇଗଲା । ସିଂହ ଯେପରି ବିଶ୍ରାମ ନିଏ, ସେହିପରି ବୁଦ୍ଧ ଗୋଡ଼ ଉପରେ ଗୋଡ଼ ରଖି ଉତ୍ତର ଦିଗକୁ ମୁଣ୍ଡ କରି ଡାହାଣ କରି ମାଡ଼ି ଶୋଇଲେ ।

ଏହିପରି କଥିତ ଅଛି ଯେ, ସେତେବେଳେ ଶାଲଗଛରେ ଫୁଲ ଫୁଟି-ବାର ସମୟ ନ ହୋଇଥିଲେ ମଧ୍ୟ ତଥାଗତ ଯେଉଁ ଶାଲଗଛ ଦୁଇଟିର ମଝିରେ ଶୋଇଥିଲେ, ତାହା ଫୁଲରେ ଭରିଉଠିଥିଲା ଏବଂ ତାଙ୍କ ଦେହରେ ଗୋଟି ଗୋଟି ହୋଇ ଫୁଲ ଆସି ପଡ଼ୁଥିଲା । ଆକାଶରୁ ସଙ୍ଗୀତର ମୂର୍ଚ୍ଛନା ଭାସି ଆସୁଥିଲା । ବୁଦ୍ଧ ଆନନ୍ଦଙ୍କୁ ଡାକି କହିଲେ, "ଆନନ୍ଦ, ଶାଲ ଗଛରେ

ଫୁଲ ଫୁଟିବାର ଏ ବେଳ ନ ହେଲେ ମଧ୍ୟ ଫୁଲ ଫୁଟିଛି, ଆକାଶରୁ ସଙ୍ଗୀତ ଶୁଣାଯାଉଛି । ତଥାଗତଙ୍କ ମୃତ୍ୟୁ ସମୟରେ ତାଙ୍କୁ ସମ୍ମାନ କରିବା ପାଇଁ ଏସବୁ ଆୟୋଜନ । କିନ୍ତୁ ଆନନ୍ଦ, ଏପରି ସମ୍ମାନ ତଥାଗତଙ୍କର ପ୍ରିୟ ନୁହେଁ । ସ୍ତ୍ରୀ ବା ପୁରୁଷ ଯେଉଁମାନେ ବୁଦ୍ଧଙ୍କର ଶିଷ୍ୟ ବା ଉପାସକ, ସେମାନେ ଯଦି ତାଙ୍କର ଉପଦେଶ ମାନନ୍ତି, ତାଙ୍କର ପ୍ରଦର୍ଶିତ ମାର୍ଗରେ ଚାଲନ୍ତି, ତା'ହେଲେ ସେଥିରେ ତଥାଗତଙ୍କର ସର୍ବଶ୍ରେଷ୍ଠ ସମ୍ମାନ, ସର୍ବଶ୍ରେଷ୍ଠ ଗୌରବ ।"

ତା'ପରେ ବୁଦ୍ଧ ଆନନ୍ଦଙ୍କୁ ମୃତ୍ୟୁପରେ ତାଙ୍କ ଶରୀରର କି ବ୍ୟବସ୍ଥା କରିବାକୁ ହେବ, କିପରି ଦାହ କରିବାକୁ ହେବ, ସବୁ ଉପଦେଶ ଦେଲେ । ଆନନ୍ଦ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେ ବୁଦ୍ଧଙ୍କ ପାଖରୁ ଦୌଡ଼ି ଯାଇ ଗଛର ଆଢ଼ୁଆଳରେ କାନ୍ଦିବାକୁ ଲାଗିଲେ ।

ବୁଦ୍ଧ ଭିକ୍ଷୁମାନଙ୍କୁ ପଠାଇ ଆନନ୍ଦଙ୍କୁ ଡକାଇଲେ । ଆନନ୍ଦ ପାଖରେ ବସିବାରୁ କହିଲେ, "ଶୋକ କର ନାହିଁ, ଆନନ୍ଦ ! କେତେ ଥର ମୁଁ ତୁମକୁ କହିଚି, ଯାହା କିଛି ପ୍ରିୟ, ସୁଖକର ଓ ଉପଭୋଗ୍ୟ, ଦିନେ ନା ଦିନେ ତାକୁ ହରାଇବାକୁ ପଡ଼ିବ । କାରଣ ଏ ଜୀବନ ନାଶଶୀଳ । ଏ ଜୀବନର ନାଶ ନ ହେଉ, ଏହା ଭାବିବା ବୃଥା । ଏ କଥା କେବେ ସମ୍ଭବ ନୁହେଁ । ଆନନ୍ଦ, ତୁମେ ଦୀର୍ଘକାଳ ଧରି ନିର୍ମଳ ମନରେ ଶ୍ରଦ୍ଧାର ସହିତ ମୋର ସେବା କରି ଆସିଚ । ତୁମେ କୃତପୁଣ୍ୟ । ଚିନ୍ତିତ ହୁଅ ନାହିଁ । ଅଚିରେ ମୁକ୍ତ ହୋଇ-ଯିବ ।"

ବୁଦ୍ଧ ମଲ୍ଲମାନଙ୍କର ଶାଳବନରେ ଅନ୍ତିମ ଶଯ୍ୟାରେ ଶୋଇଥିବାର ସମ୍ବାଦ ସଙ୍ଗେ ସଙ୍ଗେ ଚାରିଆଡ଼େ ବ୍ୟାପିଗଲା । ତାଙ୍କର ଶେଷ ଦର୍ଶନ ପାଇଁ ଜନତାର ଏକ ଅବାରିତ ସ୍ରୋତ ଛୁଟିଲା । ମହାପୁରୁଷଙ୍କର ଆଉ ଦର୍ଶନ ହେବନାହିଁ ବୋଲି ବାଷ୍ପରୁଦ୍ଧ କଣ୍ଠରେ ସମସ୍ତେ ଆସି ତାଙ୍କର ବନ୍ଦନା କରୁଥିଲେ । ଏହିପରି ରାତ୍ରିର ପ୍ରଥମ ଯାମଟି ବିତିଗଲା ।

ଦ୍ୱିତୀୟ ପ୍ରହରବେଳେ ବୁଦ୍ଧ ସମ୍ପୂର୍ଣ୍ଣ ବିଶ୍ରାମ ନେଉଛନ୍ତି ଏବଂ ଶିଷ୍ୟମାନେ ତାଙ୍କୁ ଚାରିଆଡ଼େ ଘେରି ବସିଛନ୍ତି, ଏହି ସମୟରେ ଜଣେ ସନ୍ନ୍ୟାସୀ ଆସି

ବୁଦ୍ଧଙ୍କର ଦର୍ଶନ ଇଚ୍ଛାକଲେ । ସନ୍ନ୍ୟାସୀ ସୁଭଦ୍ର କୁଶୀନାରାରେ ରହୁଥିଲେ । ବୁଦ୍ଧ ମୃତ୍ୟୁଶଯ୍ୟାରେ ଶୋଇଥିବା ଖବର ପାଇ ଲୋକେ ସ୍ତ୍ରଆଡ଼େ କହୁଥିବାର ସେ ଶୁଣିପାରିଲେ, "ଏହିପରି ମହାପୁରୁଷ ହଜାର ହଜାର ବର୍ଷରେ ଥରେ ସଂସାରକୁ ଆସନ୍ତି । ଆଜ ରାତି ପରେ ଆମେ ଆଉ ତାଙ୍କୁ ଦେଖି ପାରିବା ନାହିଁ ।" ସୁଭଦ୍ରଙ୍କ ମନରେ ଧର୍ମ ସମ୍ପର୍କରେ ବହୁ ସନ୍ଦେହ ରହି ଯାଇଥିଲା । ଅନେକ ସୁଯୋଗ ହରାଇଲେ ଆଉ ସୁଯୋଗ ମିଳିବ ନାହିଁ ବୋଲି ଭାବି ସେ ସେଠାରେ ଯାଇ ପହଞ୍ଚିଲେ । ତଥାଗତ ବିଶ୍ରାମ ନେଉଛନ୍ତି, ତାଙ୍କୁ କଷ୍ଟ ଦେବା ଠିକ୍ ନୁହେଁ ବୋଲି କହି ଆନନ୍ଦ ସୁଭଦ୍ରଙ୍କୁ ଫେରାଇ ଦେଉଥିଲେ । ମାତ୍ର ବୁଦ୍ଧ ଏକଥା ଶୁଣିପାରି ସୁଭଦ୍ରଙ୍କୁ ଡକାଇ ପଠାଇଲେ ଓ କେହି ଶ୍ରଦ୍ଧାର ସହିତ ତାଙ୍କର ଉପଦେଶ ଗ୍ରହଣ କରିବାକୁ ଆସିଲେ ସେ ଫେରାଇ ଦେବେ ନାହିଁ ବୋଲି କହି ସୁଭଦ୍ରଙ୍କ ସମସ୍ତ ପ୍ରଶ୍ନର ଉତ୍ତର ଦେଲେ ଏବଂ ତାଙ୍କର ସନ୍ଦେହ ମୋଚନ କରି ତାଙ୍କୁ ଶିଷ୍ୟରୂପେ ଗ୍ରହଣକଲେ । ସୁଭଦ୍ର ହେଲେ ବୁଦ୍ଧଙ୍କ ଜୀବନର ସର୍ବଶ୍ରେଷ୍ଠ ଶିଷ୍ୟ ।

ଏହାପରେ ବୁଦ୍ଧ ଆନନ୍ଦଙ୍କୁ ଡାକି କହିଲେ, "ଆନନ୍ଦ, ମୁଁ ଚାଲିଯିବା ପରେ ତୁମ ମଧ୍ୟରୁ କେହି କେହି କହିପାରନ୍ତି – ଆମକୁ ଶୂନ୍ୟ ଜଣାଯାଉଛି, ଆମର ଆଉ କେହି ଗୁରୁ ନାହାନ୍ତି । ଆନନ୍ଦ, ଏପରି କହିବା ଠିକ୍ ନୁହେଁ । ମୁଁ ଯେଉଁ ଧର୍ମ ବିନୟର ଉପଦେଶ ଦେଇଛି, ମୋ ପରେ ସେହି ତୁମର ଗୁରୁ । ସେହି ଧର୍ମର ଅନୁସରଣ କର ।"

ତା'ପରେ ବୁଦ୍ଧ ଭିକ୍ଷୁ ସଂଘକୁ ଆମନ୍ତ୍ରଣ କରି କାହାର କିଛି ସନ୍ଦେହ ଥିଲେ ପଚାରିବା ପାଇଁ କହିଲେ । କେହି କିଛି ନ ପଚାରିବାରୁ କହିଲେ, "ଶୁଣ, ଭିକ୍ଷୁମାନେ, ଯାହାର ଜନ୍ମ ଅଛି, ତା'ର ନିଶ୍ଚୟ ମୃତ୍ୟୁ ଅଛି । ଆଳସ୍ୟ ନ କରି ଜୀବନର ଲକ୍ଷ୍ୟକୁ ସମ୍ପାଦନ କର ।" ଏହି ହେଉଛି ବୁଦ୍ଧଙ୍କର ଶେଷକଥା ।

ଏହାପରେ ବୁଦ୍ଧ ପ୍ରଥମ ଧ୍ୟାନ ପ୍ରାପ୍ତହେଲେ । ପ୍ରଥମ ଧ୍ୟାନରୁ ଦ୍ୱିତୀୟ ଧ୍ୟାନ, ଦ୍ୱିତୀୟରୁ ତୃତୀୟ ଓ ଚତୁର୍ଥ—ଏହିପରି ନିର୍ବାଣର ସମସ୍ତ ସ୍ତରରେ ପହଞ୍ଚି ସେ ଶେଷ ନିଃଶ୍ୱାସ ତ୍ୟାଗକଲେ ।

ଯେଉଁ ଭିକ୍ଷୁମାନେ ନୂଆ ହୋଇ ସଂଘରେ ଯୋଗ ଦେଇଥିଲେ, ବୀତରାଗ ହୋଇ ନଥିଲେ, ବୁଦ୍ଧଙ୍କର ପରିନିର୍ବାଣ ହେବାପରେ ସେମାନେ କାନ୍ଦିବାକୁ ଲାଗିଲେ। ମାତ୍ର ଅନୁରୁଦ୍ଧ ବୁଦ୍ଧଙ୍କର ଶିଷ୍ୟମାନେ ଶୋକ କରିବା ଉଚିତ ନୁହେଁ ବୋଲି କହି ଏହି ଭିକ୍ଷୁମାନଙ୍କୁ ପ୍ରବୋଧନା ଦେଇଥିଲେ।

ଏହିପରି ବୈଶାଖ ପୂର୍ଣ୍ଣିମାର ଶେଷ ଯାମରେ ବୁଦ୍ଧଙ୍କର ପରିନିର୍ବାଣ ହେଲା। ଏହିପରି ଏକ ଦିନରେ ତାଙ୍କର ଜନ୍ମ ହୋଇଥିଲା ଲୁମ୍ବିନୀର ଶାଳ-ବନରେ ଏବଂ ଏହିପରି ଏକ ଦିନରେ ବୋଧିଦ୍ରୁମର ତଳେ ସେ ବୁଦ୍ଧତ୍ୱ ବା ଜ୍ଞାନ ଲାଭ କରିଥିଲେ। ତେଣୁ ବୈଶାଖ ପୂର୍ଣ୍ଣିମା ହେଉଛି ବୌଦ୍ଧମାନଙ୍କର ଏକ ମହାପର୍ବର ଦିନ।

ପ୍ରଭାତ ହେବାରୁ ବୁଦ୍ଧଙ୍କର ଶରୀରକୁ ସମ୍ମାନ ଦେଖାଇବା ପାଇଁ ଏକ ଉତ୍ସବର ଆୟୋଜନ ହେଲା। ନବବସ୍ତ୍ର, ମାଳା ଓ ଗନ୍ଧ ଚନ୍ଦନରେ ବୁଦ୍ଧଙ୍କ ଦେହକୁ ଭୂଷିତ କରାଗଲା ଏବଂ ନୃତ୍ୟ, ଗୀତ, ବାଦ୍ୟରେ ସାତଦିନକାଳ ଏହି ଉତ୍ସବ ପାଳିତ ହେଲା। ସପ୍ତମ ଦିନ ମଲ୍ଲମାନଙ୍କ ମଧ୍ୟରୁ ଆଠଜଣ ମୁଖ୍ୟ ବ୍ୟକ୍ତି ଆସି ବୁଦ୍ଧଙ୍କର ଶରୀରକୁ ଏକ ସୁସଜ୍ଜିତ ବିମାନରେ ବସାଇ ନଗର ପରିକ୍ରମା କଲେ ଏବଂ ନଗରର ଉତ୍ତର ଦିଗରେ ଥିବା ମୁକୁଟ-ବନ୍ଧନ ନାମକ ଶ୍ମଶାନକୁ ନେଇଗଲେ। ସେଠାରେ ଚନ୍ଦନ କାଠର ଚିତାରେ ବୁଦ୍ଧଙ୍କର ଦେହକୁ ରଖାଗଲା। ମାତ୍ର ନିଆଁ ଲଗାଇବାରୁ ଲାଗିଲା ନାହିଁ। ବୁଦ୍ଧଙ୍କର ଜଣେ ପ୍ରଧାନ ଶିଷ୍ୟ ମହାକାଶ୍ୟପ ପାଞ୍ଚ ଶହ ଭିକ୍ଷୁଙ୍କୁ ଧରି ତାଙ୍କର ଦର୍ଶନ ପାଇଁ ଆସୁଥିଲେ। ସେ ଆସିଣ ତିନିଥର ବୁଦ୍ଧଙ୍କର ଚିତାର ଚାରିପାଖେ ବୁଲି ବନ୍ଦନା କରିବା ପରେ ଚିତାରେ ନିଆଁ ଲାଗିଲା। ଶରୀର ସମ୍ପୂର୍ଣ୍ଣ ଦଗ୍ଧ ହୋଇଯିବା ପରେ ହଠାତ୍ ଆକାଶରେ ଖଣ୍ଡେ ମେଘ ଉଠାଇ ବର୍ଷା ହେଲା ଏବଂ ଚିତା ଥଣ୍ଡା ହେଲା। ମଲ୍ଲମାନେ ଗନ୍ଧ-ଚନ୍ଦନ ମିଶ୍ରିତ ଜଳରେ ପୁଣି ଥରେ ଏହାକୁ ଶୀତଳ କଲେ।

ବୁଦ୍ଧଙ୍କର ମୃତ୍ୟୁର ସମ୍ବାଦ ରଟିଯିବା ପରେ ମଗଧର ରାଜା ଅଜାତଶତ୍ରୁ, ବୈଶାଳୀର ଲିଚ୍ଛବି, କପିଳବାସ୍ତୁର ଶାକ୍ୟ, ରାମଗ୍ରାମର କୋଳିୟ ପ୍ରଭୃତି ଚାରିଆଡ଼ୁ ରାଜା ଓ ଶାସକମାନେ ତାଙ୍କର ଅସ୍ଥି ସଂଗ୍ରହ କରିବାପାଇଁ ପଠାଇଥିଲେ।

ମଲ୍ଲମାନେ ପ୍ରଥମେ ଅସ୍ଥି ଦେବାପାଇଁ ମନା କରିଦେଲେ ଏବଂ ଅଜାତଶତ୍ରୁ ସଙ୍ଗେ ସଙ୍ଗେ ଯୁଦ୍ଧ କରିବାପାଇଁ ବାହାରିଲେ । ଶାନ୍ତି ଏବଂ ମୈତ୍ରୀର ପ୍ରଚାରକ ଏହି ଶ୍ରେଷ୍ଠ ପୁରୁଷଙ୍କ ପାଇଁ ଏପରି ବିବାଦ ସ୍ପୃହଣୀୟ ନୁହେଁ ବୋଲି ବୁଦ୍ଧଙ୍କର ପ୍ରଧାନ ଶିଷ୍ୟମାନେ ବୁଝାଇବା ପରେ ଆପୋଷରେ ଅସ୍ଥି ବଣ୍ଟନ ହୋଇଥିଲା ।

ଯେଉଁମାନେ ଅସ୍ଥି ପାଇଲେ ନାହିଁ, ସେମାନେ ଭସ୍ମ ନେଇଗଲେ ଏବଂ ଏହି ଅସ୍ଥି ଓ ଭସ୍ମ ଉପରେ ସ୍ମରଣାର୍ଥେ ସମାଧି ମନ୍ଦିର ବା ଚୈତ୍ୟମାନ ନିର୍ମିତ ହେଲା ।

ବୁଦ୍ଧଙ୍କର ଗୋଟିଏ ଦାନ୍ତ ଗାନ୍ଧାର ଏବଂ ଅନ୍ୟ ଗୋଟିଏ ଦାନ୍ତ କଳିଙ୍ଗ ଦେଶକୁ ଆସି ପୂଜା ପାଇଥିଲା ।

ପରବର୍ତ୍ତୀ କାଳରେ କଳିଙ୍ଗ ହେଲା ବୌଦ୍ଧଧର୍ମର ଏକ ପ୍ରଧାନ ପୀଠ ଏବଂ ଏସିଆର ଦେଶ ଦେଶରେ ଏହି ଧର୍ମ ପ୍ରଚାରର ଯେଉଁ ରୋମାଞ୍ଚକର କାହାଣୀ ଲେଖାହେଲା, ତାହା ପ୍ରଥମେ ଆରମ୍ଭ ହେଲା ଏହି କଳିଙ୍ଗ ଦେଶରେ; ଯେଉଁଦିନ ରାଜପୁତ୍ର ମହେନ୍ଦ୍ର ଓ ରାଜକନ୍ୟା ସଂଘମିତ୍ରା ତାମ୍ରଲିପ୍ତ ବନ୍ଦରରୁ ଭିକ୍ଷୁର ଗୈରିକ ବସ୍ତ୍ର ପିନ୍ଧି ସିଂହଳ ଅଭିମୁଖରେ ଯାତ୍ରା କଲେ ।

